# ପଦ୍ମିନୀ

( ଐତିହାସିକ କାବ୍ୟ )



ଲୋଚନା ଦେଈ, କବିତା ମନୋରମାଙ୍କ କୃତ ।
ଦେବଗଡ, ବାମଣ୍ଡା ।

ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି
କର୍ଣ୍ଣାଟୋତ୍କଳବର୍ଗେଶ୍ୱର ବୀରାଧିବୀରବର
ଶ୍ରୀ ଶ୍ରୀ ଶ୍ରୀ ମହାରାଜା ରାମଚନ୍ଦ୍ର ଦେବଙ୍କ
ଅନୁକୂଲ୍ୟରେ ପ୍ରକାଶିତ ।

ଦ୍ୱିତୀୟ ସଂସ୍କରଣ ।

Printed by V. Kar
THE UTKAL SAHITYA PRESS,
CUTTACK.
1930.

ମୂଲ୍ୟ ଃ ୦ ।/ ପାଞ୍ଚଅଣା ମାତ୍ର ।

# ନିବେଦନ

—————

"ପଦ୍ମନୀ" ମୋହର ବାଲ୍ୟ ରଚନା । ଯେତେବେଳେ ମୋହର ବୟସ ୧୪ ବର୍ଷ ମାତ୍ର ତେତେବେଳେ ଏହା ଲିଖିତ ହୋଇଥିଲା । ପ୍ରକାଶର ଅଯୋଗ୍ୟ ଭାବି ଉପେକ୍ଷିତ ଭାବେ ରଖିଥିଲି । ବହୁଦିନ ପରେ ଘଟନାକ୍ରମେ ମୋହର ପୂଜନୀୟ ପିତୃଦେବଙ୍କର ନୟନପଥାରୂଢ଼ ହେବରୁ ଏହା ପ୍ରକାଶିତ ହେବାକୁ ସେ ଉତ୍ସାହ ଦେଲେ । ସମ୍ବଲପୁର ହିତୈଷିଣୀରେ ଏହା ପ୍ରକାଶିତ ହୋଇଥିଲା ।

ଏଥିରେ ଭାବ କଳ୍ପନା ଗାମ୍ଭୀର୍ଯ୍ୟ, ଲଳିତ ପଦବିନ୍ୟାସ, ସୁଖବୋଧ ଅଲଙ୍କାର ନାହିଁ । ଏଭଳି ଲେଖା ଜନସମାଜରେ ପ୍ରକାଶର ସାହସ ଉପହସନୀୟ ସିନା ?

ଆଶା ରଖେ, ଶ୍ରଦ୍ଧେୟ ପାଠକପାଠିକା ମହୋଦୟଗଣ ଲେଖିକାର ଧୃଷ୍ଟତା ମାର୍ଜନା କରିବା ହେବେ । ସବିନୟ ନିବେଦନମିତି ।

ଦେବଦୁର୍ଗ
ବାମଣ୍ଡା

ବିନୀତା
ସୁଲୋଚନା ଦେଈ
ବିବିଧା ମନୋରମା ।

## ଉତ୍ସର୍ଗ ପତ୍ର



ବିବିଧ ସଦ୍‌ଗୁଣସମନ୍ୱିତା, ଅଶେଷ ସୌଜନ୍ୟଯୁକ୍ତା
ହିନ୍ଦୁସମାଜର ଲକ୍ଷ୍ମୀକଳ୍ପା, ଉତ୍କଳସାମ୍ରାଜ୍ଞୀ, ପବିତ୍ର ଧାମ
ଶ୍ରୀକ୍ଷେତ୍ର ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି
କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ବୀରାଧିବୀରବର
ଶ୍ରୀ ଶ୍ରୀ ଶ୍ରୀ ରାମଚନ୍ଦ୍ର ଦେବଙ୍କ

### ପଟ୍ଟମହିଷୀ

ମହାମାନ୍ୟେଷୁ ।

ଉତ୍କଳ ଗଗନ ଅମଳ ଚନ୍ଦ୍ରମା
ଗଜପତି ପାଟରାଣୀ,
ରୂପେ ଗୁଣେ ଧନ୍ୟା ମହାମହିମାଯ୍ୟା
ସରସ୍ୱତୀ ଅବତରଣୀ—
ଅଦ୍ୟ ଭେଟ କାଳେ ଏ ଅଧୀନା ପ୍ରତି
ଅସୀମ ଦୟା ଜାଣିଲି,
ମଧୁ ଆଳାପନ ପାଇ ହେଲି ଧନ୍ୟା
ଆଜୀବନ କିଣା ହେଲି ।
କି ଦେଇ ପୂଜିବି ଦେବୀ ଯେଣୁ ତୁମ୍ଭେ
ଅଛି ମୋର କେବା ଧନ ।

ଅର୍ଦ୍ଧା ପଦ୍ମୀଙ୍କ ମହତ ଚରିତ
କରିବା ଦେଉ ଗ୍ରହଣ ।
ନାହିଁ ଗୋ ଏଥିରେ କଳ୍ପନା ଗୃଭୁଷ୍ଟ
ନାହିଁ ପଦ ସୁବିନ୍ୟାସ,
ସତୀ ପଦ୍ମୀଙ୍କ ନାମଯୁକ୍ତ ଯେଣୁ
ଅର୍ପଣେ କଲି ସାହସ ।
ଭକ୍ତି-ପୁଷ୍ପ ଧୋଇ ପ୍ରୀତି-ଗଙ୍ଗାଜଳେ
ଶ୍ରଦ୍ଧା ଚନ୍ଦନ ବୋଳି,
ଶ୍ରୀ ଚରଣ ତଳେ ଅବନତ ଶିରେ
ଏହି ଉପହାର ଦେଲି ।

ଦୋଳପୂର୍ଣ୍ଣିମା
୧୩୨୩ ସାଲ

ଶ୍ରୀ ଶ୍ରୀ ଶ୍ରୀ ପ୍ରଭୁଙ୍କର
ଏକାନ୍ତ ଅନୁଗତା
ସୁଲୋଚନା ଦେଈ

ଉତ୍କଳର ଲବ୍ଧପ୍ରତିଷ୍ଠ ଲେଖକ ବିଦ୍ୟୋତ୍ସାହୀ

ଗୁଣଗ୍ରାହୀ ସୁନୀତିପରାୟଣ

ଶ୍ରୀମାନ ଜଳନ୍ଧର ଦେବ

ମହୋଦୟଙ୍କର ମନ୍ତବ୍ୟ ।

"ଏହି ପୁସ୍ତକ ଛପାଇବାରେ ସାହାଯ୍ୟ କରି ପାରିଥିଲେ ସୁଖୀ ହୋଇଥାନ୍ତି ... ... ... ... ... ... ... ... ... ... ... ... ପୁସ୍ତକ ଖଣ୍ଡ ସରଳ ଓ ସୁପାଠ୍ୟ ହୋଇଅଛି ।"

ସ୍ୱାକ୍ଷର

ଶ୍ରୀ ଜଳନ୍ଧର ଦେବ ।

# ପଦ୍ମିନୀ ।

( ଐତିହାସିକ କାବ୍ୟ )

## ପ୍ରଥମ ସର୍ଗ ।

ଦେବୀ ସରସ୍ୱତୀ ଦାସୀର ମିନତି
ବସ ହୃଦ-ସିଂହାସନେ,
ତବ ଆଶୀର୍ବାଦେ ପଦ୍ମିନୀ ଚରିତ
ଗାଇବ ଆନନ୍ଦ ମନେ ।
ଏ ସାରା ଜଗତ କରିଲେ ସୃଜନ
ଯେଉଁ ପ୍ରଭୁ ମୂଳାଧାର,
ତାହାଙ୍କ ଚରଣେ ଏ ମୂଢ଼ ହୃଦୟ
ନମୁଁ ଅଛି ବାରମ୍ବାର ।
ଆସ ମନ ! ଯିବା ରାଜପୁତାନାକୁ
ଯହିଁ ଶୋଭଇ ଚିତୋର,
ଦେଖିବୁ ତୁ ଶୋଭା ବୀରଜନନୀର
ପ୍ରକୃତ ଭୂଷା ବିସ୍ତାର ।
ଅଭ୍ୟୁଚ୍ଚ ଶିଖରୀ ଯାଚେଷ୍ଟ ପକ୍ଷ ଏ
ଆବରି ଉହଳ କାୟା,
ବୀର ପୁତ୍ରଙ୍କର ଶ୍ରାନ୍ତ ଦହବାକୁ
ପ୍ରଦାନ କରେ ତ ଛାୟା ।

ଧରାଧର ଦେହେ   ଶୋଭା ପାଏ କେତେ
ଜାତ ଫୁଲ, ତରୁବର;
ଝର ଝର ନାଦେ   ନବଭାବ ଆଣେ
ତା ଦେଖୁଁ ବନ୍ଧୁ ନିର୍ଝର ।

ଖେଳୁଛନ୍ତି ତହିଁ   ନାନା ଜଳଚର
ସୁଖେ କରି ସନ୍ତରଣ,
ଶାରସନ୍ଧି ହୃତ   ବୃକ୍ଷେ ବସି ପକ୍ଷୀ
କରନ୍ତି କାକଳୀ ସ୍ୱନ ।

ଲତା ଫୁଲ୍ଲ ରାଜି   ବଢାଏ ସୁଷମା
ପ୍ରାଣ ହୁଏ ମଧୁଆଶା,
ବାଣ୍ଟି ଦେଉଛନ୍ତି   ପ୍ରକୃତି ଲଳନା
ବକ୍ଷ ପ୍ରେମାମୃତ ଧାରା ।

ପାଦଦେଶେ ତାର   ଶାରପ୍ରସବଣୀ
ଶୋଭେ ଚକୋର ନୟନୀ,
ସଦା ହାସ୍ୟମୟୀ   ଗର୍ବିତା ସୁନ୍ଦରୀ
ଶାର ପୁଣ୍ୟ କୋଳେ ଧରୁ ।

ଷଡ଼ଦ୍ୱାର ଜଗି   ବସିଛନ୍ତି ଦ୍ୱାରୀ
ଅଭୁତ ଦକ୍ଷେ କବାଟ,
ଅନୁମତି ବିନା   ପଶିବାକୁ ମନା
ବଇରୀ ହୁଏ ଅକାଟ ।

ବାଦଲ ମହଲ    ମସ୍ତକେ ପତାକା
ଉଡ଼ୁଅଛି ଫର ଫର,
ଅରୁଣର ପ୍ରଭା    ଚହଲାଇ ଦଉଛି
ଅଦ୍ଦବଂଶ ଦନକର ।
ଜାଳୋଟଡ ଛଟେ    ବସିଛି ବପଣି
ଖାଲପ୍ରିୟ ପ୍ରହରଣ,
ରାଜପୁତଗଣ    କିଣୁଛନ୍ତି ଅସ୍ତ୍ର
ଯାର ହୁଏ ଯାହା ମନ ।

ବସିଛି ଖେଳନା    ଧାଡ଼ି ଧାଡ଼ି ହୋଇ
ପ୍ରକାଶି ଯାର ମହିମା,
ଖେଳନାରେ ସୁଦ୍ଧା    ପ୍ରକଟ ରହିଛି
ଯୁଦ୍ଧ ଲଢ଼ାଇ ଭଙ୍ଗିମା ।
ରାଜପୁତ ଶିଶୁ    କିଣି ଦେଖୁଛନ୍ତି
ଭାବୀ ଜୀବନର ଚିତ୍ର,
ଶୈଶବ ସମୟେ    ଯାହା ଶିକ୍ଷା ପାଏ
ହୃଦେ ହୁଅଇ ଖୋଦିତ ।

ଗୁଣ୍ଡିଆ ଦୋକାନ    ବସନ ବିପଣି
ବସିଅଛି ଚଉପାଶେ,
ଅନେକ ବଜାର    ହାଟ ବସିଅଛି
ଚତୁର୍ଦ୍ଦିଗର ପରକାଶେ ।

ସର୍ବାଙ୍ଗସୁନ୍ଦରୀ ଚିତୋର ନଗରୀ
ଭୀମସିଂହ ଅଧୀଶ୍ୱର ।
ପାଳନ୍ତି ପରଜା ବନ୍ଧୁ ଜନାଶ୍ରୟ
ଧର୍ମେ ରକ୍ଷ ନିରନ୍ତର,
ପ୍ରଶାନ୍ତ ପ୍ରକୃତି ଦୟାଳୁ ସୁଧୀର
କୁଳଧର୍ମେ ସଦା ରତ,
ନିର୍ଭୟ ହୃଦୟ ସାଧୁ ମହାଶୟ
ତାହା ସୁନିର୍ମଳ ମତ ।

ଦୂର ଦେଶାନ୍ତରେ ଚହଟି ଉଠିଲା
ଚିତୋର ରାଜ ସୁଯଶ,
ବଇରୀସମୂହ ପୃଷ୍ଠଭଙ୍ଗ ଦେଲେ
ହୃଦରେ ଲଭି ସାଧ୍ୱସ ।

ଚୌହାନ ବଂଶଜ ଶ୍ରୀହାମିର ଶଙ୍ଖ
ସିଂହଳ ଦ୍ୱୀପାଧୀଶ୍ୱର,
କନ୍ୟା ପଦ୍ମିନୀର ବିବାହ ନିମନ୍ତେ
ଖୋଜିଲେ ସୁଯୋଗ୍ୟ ବର ।
ମନ୍ତ୍ରୀଗଣ ସହ ମନ୍ତ୍ରଣା କରିଣ
ଭୀମ ସିଂହେ ଯୋଗ୍ୟ ମଣି,
କନ୍ୟା ଦେବା ପାଇଁ ସ୍ଥିର କଲେ ତହେଁ
ପଦ୍ମିନୀ ଶୋଭାର ଖଣି ।

ଶୁଣି ସମାଚାର　　ଚିତୋର ରାଜାଙ୍କ
ହୃଦେ ଉପୁଜିଲା ପ୍ରୀତି,
ଚିତୋର ଦୁର୍ଗକୁ　　ପଠାଇଲେ ଦୂତ
ପତ୍ର ଲେଖି ଯଥାରୀତି ।

ପଦ୍ମିଣୀସ୍ୱୟମ୍ବରେ　　ନଗରବାସିଏ
ଆନନ୍ଦେ ହେଲେ ବିହ୍ୱଳ,
ସିଂହଳେ ଆଗତ　　ଚିତୋର ଈଶ୍ୱର
ସଙ୍ଗେ ସୈନ୍ୟ ଦଳ ବଳ ।

ବଡ଼ ଆୟୋଜନ　　କରିଲେ ହରଷେ
ସିଂହଳ ଦ୍ୱୀପାଧିବାସୀ,
ଅଧିଷ୍ଠିତା ହେଲେ　　ନଗର ମଧ୍ୟରେ
ଜବା ଯୋଗାଦେବୀ ଆସି ।

ବାଜେ ନାନା ବାଦ୍ୟ　　ନାଚନ୍ତି ନର୍ତ୍ତକୀ
ହାସ୍ୟ କୌତୁକ କଳାପ,
ଧବଳ ମନ୍ଦିରେ　　ଗାନ ମାନ ଲୟ
କଲେ ରାଗର ଆଳାପ ।

ଭାଟେ କଲେ ସ୍ତୁତି　　ସଭାର ପଣ୍ଡିତେ
କଲେ ବେଦ ଉଚ୍ଚାରଣ,
ସୀମନ୍ତିନୀଗଣ　　ଅଳମ୍ବନ ଦେଇ
ଟାଙ୍ଗିଲେ ଆମ୍ବ ତୋରଣ ।

ଯେଝାର ସାଇତା ବସନ ଭୂଷଣ
ଶୋଭୁଅଛଇ ଶରୀରେ,
ସରବେ ପ୍ରଫୁଲ୍ଲ ଶୁଭେ ଶୋଭାଦେବୀ
ବିରାଜଛନ୍ତି ନଗରେ ।

ରାଜ ଅନ୍ତଃପୁରେ ସଜନୀ ମଣ୍ଡଳେ
ଖେଳେ ଆନନ୍ଦ ଲହରୀ,
ବର କନ୍ୟା ଗଲେ ମାଳା ଦେବା ପାଇଁ
ଫୁଲ ଗୁନ୍ଥେ କେ ସୁନ୍ଦରୀ ।

କେହୁ ବା ପଦ୍ମିନୀ କବରୀ ବାନ୍ଧଇ
ଦିଏ ବା ଶଙ୍ଖେ କୁସୁମ,
ଚନ୍ଦ୍ରାର୍ଦ୍ଧ ଲଲାଟେ ଗୋରୋଚନା ଦେଖି
ଶଶୀ ବୋଲି ହୁଏ ଭ୍ରମ ।
ସିନ୍ଦୂରର ବିନ୍ଦୁ ସୀମନ୍ତେ ବସିଛି
କି ଅବା ପ୍ରଭାତ ତାରା,
ନୀଳାକାଶ ଭ୍ରମେ ନୀଳକେଶ ମଧ୍ୟେ
ବସିଛି ଗରବେ ପରା ।

ଅନେକ ସଜନୀ କମ୍ବୁକଣ୍ଠେ ଆଣି
ଖଞ୍ଜିଲେ ରତନ ହାର ।
କର୍ଣ୍ଣେ କର୍ଣ୍ଣଫୁଲ ଦଶିଲ ଅତୁଲ୍ୟ
ପିନ୍ଧାଇଲେ ପଟ୍ଟାମ୍ବର ।

କର-ମୃଣାଳରେ ଦିଶୁଅଛି ସଖୀ
ହୀରକେ ରଚିତ ଚୂଡ଼ୀ
ବାଜୁଛି ନୂପୁର ଯୋଗ୍ୟ ସ୍ଥାନ ପାଇ
ଲଭେ ପାଦପଦ୍ମେ ଜଡ଼ି ।
ଅଙ୍ଗୁଷ୍ଠେ ମୁଦ୍ରିକା ଦେଇ ଭୂଷେ ଅଳି
ଚାହିଁ ଦେଖ ଗୋ ସଜନି,
ନାରୀ ମଧ୍ୟେ ସାର ସର୍ବ ସୁଲକ୍ଷଣା
ହୁଏ ଯେ ରମଣୀମଣି ।

ତାହାଙ୍କୁ କିନା ଗୋ ପଦ୍ମିନୀ ବୋଲନ୍ତି
ଏହୁ ତ ସେହୁ ପଦ୍ମିନୀ,
ତ ଅବା ପୁଣି ଗୋ ଜନ୍ମନେଲେ ଆସି
ଦେବାସୁରଙ୍କ ମୋହିନୀ ?
କାହାକୁ ଉପମା ଦେବା ଗୋ ସଜନି
ଏ ତ ସାଗରନନ୍ଦିନୀ,
ସୁରେନ୍ଦ୍ରମୋହିନୀ ଅବା ଶିବପ୍ରିୟା
ବାମ-ହୃଦ-ବିହାରିଣୀ ?

ଯେତେକ କହୁଛ ମନେ ନ ଆସୁଛି
ସେମାନଙ୍କୁ ନାହିଁ ଦେଖି,
ଯେ ରୂପେ କଳ୍ପନା କରଇ ଗୋ ସଖି
ଚକ୍ଷୁରେ ଯାଉଛି ଲଖି ।

ସଖି ଏ ଲତିକା ଯେଉଁ ତରୁବରେ
ପ୍ରେମାଲିଙ୍ଗନ କରିବ,
ଅନାଘ୍ରାତ ପୁଷ୍ପ ଯେଉଁ ଭାଗ୍ୟଧର
ହୃଦୟପଟେ ଶୋଭିବ,
ସେ ହିଁନା ଜଗତେ ଭାଗ୍ୟବାନ ସତ୍ୟ
ପ୍ରେମଧନେ ସେହି ଧନୀ,
ଏମନ୍ତେ ରହସ୍ୟେ ଯୋଗ ଦେଲେ ମୋଦେ
ଏଣୁ ଅନେକ ସଜନୀ ।
ବିଭାର ଲଗନ ଉପସ୍ଥିତ ହେଲା
କହିଲେ ଜ୍ୟୋତିଷଗଣ,
କେଶରୀ ଦୁଆରୁ ଉଚ୍ଛୁଳ ପଡ଼ିଲା
ନହବତ ଘନ ଘନ ।
ପୁଷ୍ପମାଲ୍ୟ ଦେଇ ଜାମାତାଙ୍କୁ ବର
କରିଲେ ଦ୍ୱୀପାଧୀଶ୍ୱର,
ପାତ୍ର ମିତ୍ର ସହ ଉପସ୍ଥିତ ହେଲେ
ରତନ ବେଦୀ ଉପର ।
ତନୁଜା ରତନ ପୁରରୁ ଅଣାଇଁ
ବସାଇ ବେଦୀ ପାରୁଶେ,
ଶାସ୍ତ୍ର ଅନୁସାରେ ଚିତୋର ରାଜଙ୍କୁ
ଅର୍ପିଲେ ମନ ହରଷେ ।



## ଦ୍ୱିତୀୟ ସର୍ଗ ।



ରାତ୍ରି ଅବଶେଷ ସ୍ୱପନେ ସନ୍ତୋଷେ
ଗଲେ ଏବେ କ୍ଷଣାନାଥ
ବେଶ ପାଲଟନ୍ତି ଧରଣୀ ସୁନ୍ଦରୀ
ଆଗତ ଦେଖି ପ୍ରଭାତ ।
ଶୁଭ୍ରବସ୍ତ୍ରା ଉଷା— ଦୂତୀ ରୂପ ବାର୍ତ୍ତା
କହିଲା କମଳ କର୍ଣ୍ଣେ,
ପ୍ରିୟ ଆଗମନେ ଫୁଲ୍ଲ ଜଳ ରାଣୀ
ହସିଲା ହରଷ ମନେ ।
କମଳ ବନରେ ଖେଳେ ମନୋହର
ମଧୁର ପ୍ରେମ—ତରଙ୍ଗ,
ମାତ୍ର କୁମୁଦିନୀ ବିଷାଦ-ଭରରେ
ଢାଳି ଦେଲା ଅଧା ଅଙ୍ଗ ।
ଧୀର ସମୀରଣ ମୋଦେ ବହୁଅଛି
କରିବାକୁ ଅଭ୍ୟର୍ଥନା,
ରଙ୍ଗ ବସ୍ତ୍ରେ ସାଜେ ବଢାଇବା ପାଇଁ
ପୂରବ-ଦିଗ-ଅଙ୍ଗନା ।
କ୍ରମେ ଦିନକର ଚକ୍ରବାଳୋପର
ଆସି ଦେଲେ ଦରଶନ,
ଜ୍ୟୋତିର୍ମୟ ରଶ୍ମି ବର୍ଷିଲେ ଜଗତେ
ଦଶେ ଦିଗ ଆଲୋକିତ ।

ଦୂର୍ବାଦଳୋପର ନୀହାରର ବିନ୍ଦୁ
ଅହା ! କିବା ମନୋହର,
ଧରଣୀ ରାଣୀ କି ମୁକୁତାର ମାଳା
ପିନ୍ଧିଛି ବକ୍ଷ ଉପର ।
ବନେ ଉପବନେ ମନୋମୁଗ୍ଧକର
ଫୁଟିଅଛି କେତେ ଫୁଲ,
ଫୁଲେ ଫୁଲେ ଉଡ଼ି ଭ୍ରମର ଭ୍ରମରୀ
ମଧୁପାନରେ ବିହ୍ୱଳ ।
"ରାଧା କୃଷ୍ଣ" ବୋଲି ଡାକ ପଢ଼ା ଶୁଆ
ପରାଣେ ଦିଏ ଅନନ୍ଦ.
କେଉଁଣି ପାରାଟି ହଲି ହଲି ଦୋଳି
କେତେ ରଙ୍ଗେ ଭଙ୍ଗେ ବନ୍ଧ ।

ରସାଳ ବନରୁ ଡାକନ୍ତିଣି ପିକ
ଶାଳ ବନୁଁ ଡାକେ ଷାରୀ,
ଶିମୂଳ ବନରୁ ଡାକୁଅଛି ଶୁକ
କପୋତ ଦେଉଛି ଧାଇ ।

ଜଙ୍ଗଲରୁ ଚଟିଆ ଉଡ଼ି ଯାଉଛନ୍ତି
ପାପିଆ ଧରୁଛି ତାନ,
ସବୁ ପକ୍ଷୀଗଣ ଏକମେଳ ହୋଇ
ଗାଆନ୍ତି ପ୍ରଭାତୀ ଗାନ ।

ବନ୍ଦିଏ ଗାଇଲେ ସ୍ତୁତି ନାନାଛନ୍ଦେ
ଶଯ୍ୟା ତେଜି ରାଜରାଣୀ,
ମେଲ୍ଲଣି ସମସ୍ତ ଅଗତ ଜାଣେଣ
କନ୍ୟାକୁ ଡକାଇ ଅଣି,
ଭାଷିଲେ ସସ୍ନେହେ, ଶୁଣ ଗୋ କୁମାରି
ଆଜି ମୁହିଁ ଭାରମୁକ୍ତ
ଉପଯୁକ୍ତ ପାତ୍ରେ ଅର୍ପି ଧନ୍ୟ ହେଲି
ଯାହା ହିନ୍ଦୁଶାସ୍ତ୍ର ଉକ୍ତି ।

ଧର୍ମଶୀଳା ହୁଅ ଜାଣୁ ତ ସରବ
ସଂସାର-ପଥ ଦୁସ୍ତର,
ଧୀର ହୋଇ ବତ୍ସେ ! ପଦ ବଢ଼ାଇବୁ
ସାବଧାନେ ତତପର ।
ରମଣୀର ଗତି ଅଟନ୍ତି ଗୋ ପତି
ସ୍ୱାମିର ଆଜ୍ଞା ପାଳନ,
କରିବୁ ସଯତ୍ନେ କେବେ ତାହାଙ୍କରେ
ହୋଇବ ନାହିଁ ଲଙ୍ଘନ ।

ଯଦି ଅବା ପତି ଭ୍ରମ ବୁଦ୍ଧି ଦୋଷେ
କୁପଥେ କରେ ଗମନ,
ତଥାପି ତାହାଙ୍କୁ ଘୃଣା ଅନାଦରେ
ଭାଷିବୁ ନାହିଁ ବଚନ ।

—ପତ୍ନୀ—

ହୁତେ ବିପଥଗତ ଘଟଇ ସେ କାର୍ଯ୍ୟ
କୃଷ୍ଣପକ୍ଷେ ଶଶଧର
ତୁମ୍ଭ ପ୍ରେମ ନାଶେ ଏ ବିଷୟେ ପନ୍ଥା
ଧରିବୁ ନୂତନତର ।

ସ୍ନେହ ଭକ୍ତି ସୁଧା ଆଳାପନ ଦ୍ୱାରା
ତୁଷ୍ଟ କଲେ କାନ୍ତ ମନ,
ଘୋର ଜାତ ହୋଇ ସ୍ୱଭାବ ଦୁର୍ନୀତି
ହେଉ ସେ ଯେତେ ଦୁର୍ଜ୍ଜନ ।
ଶାଶୁ ଶ୍ୱଶୁର ଯେ ପିତା ମାତା ପ୍ରାୟେ
ଅତ୍ୟନ୍ତ ଭକ୍ତିଭାଜନ,
ଦେବର ନଣନ୍ଦ ଭାଇ ଭଗ୍ନୀ ତୁଲ୍ୟ
ଜାଣି କରିବୁ ଯତନ ।

ଦାସ ଦାସୀ ଗଣେ ଦୟାଶୀଳା ହୋଇ
ଅପତ୍ୟସ୍ନେହେ ପାଳିବୁ
ନାରୀର ଭୂଷଣ ସତୀତ୍ୱ ରତନ
ପ୍ରାଣପଣେ ନ ଛାଡ଼ିବୁ ।
ପୁତ୍ର ସ୍ନେହେ ଦେଖେ ଜୀବର ପରାଣ
ପତିରୂପୀ ଭଗବାନ
ପତି ଶ୍ରୀପଦ ରେ ଭେଦାଭେଦ ନାହିଁ
ପରମ ପିତା ବଚନ ।

ଏହିରୂପେ ବନ୍ଧୁ ଉପଦେଶ ଦେଇ
କନ୍ୟା ଜାମାତା ମେଲଣି
କଲେ ମହାଶକ୍ତି ଏଣିଠାରୁ ଅତି
ବଦାନ୍ୟ ପାଇଲା ମଣି ।

## ତୃତୀୟ ସର୍ଗ ।



ରୂପେ ଗୁଣେ ଧନ୍ୟା ପଦ୍ମିନୀ ସୁନ୍ଦରୀ
ଚିତୋରେ ପୂରିଲା ଯଶ,
ଜନଶ୍ରୁତି ଦ୍ୱାରା ଦିଲ୍ଲୀଶ୍ୱରଙ୍କର
ହରିନେଲା ସେ ମାନସ ।

ସ୍ଥିର ନୁହେ ମନ କିରୂପେ ତାହାଙ୍କୁ
କରିନେବ ଆପଣାର ?
ଜାଗ୍ରତେ ସ୍ୱପନେ କେବଳ ପଦ୍ମିନୀ
ହୃଦ କଲା ଅଧିକାର ।

ଚିତୋର ଦୁର୍ଗକୁ ପଠାଇଲା ଦୂତ
ନେଇ ବହୁ ରାଜ୍ୟ ଧନ,
ତାର ବଦଳରେ ପଦ୍ମିନୀ ସତୀଙ୍କୁ
କରିବାକୁ ପ୍ରତ୍ୟର୍ପଣ ।

ଏ ଦୃଶ୍ୟ ପ୍ରସ୍ତାବ ନ ଦେଖିଲେ ହିମ
ହୃତ ବ୍ୟର୍ଥ ମନୋରଥ,
ହୋଇଣ ଫେରିଲା ଦିଲ୍ଲୀ ଉପକଣ୍ଠେ
ହେଲା ଆସି ଉପଗତ ।

ଦେଖ ହେ ଭାରତ ! ମାନସ ନୟନେ
ଅଗ୍ରେ ଶୋଭୁଅଛି ଦିଲ୍ଲୀ,
ଥିଲା ଦିନେ ଏ ତ ଭାରତ ହୃଦୟାନେ
ସୁବାସିତ ଚନ୍ଦ୍ରମଲ୍ଲୀ ।

ପରିମଳ ଚାର ବନ୍ଧି ଜନମୁଣ୍ଡେ
ମୋହୁଥିଲା ଜନଲୋକ,
ଜଗତ-ଜନଙ୍କୁ ଦେଖାଇଲା ଅଗେ
ନର ପ୍ରତିଭା ଅଲୋକ ।

ନରରୂପୀ ଧର୍ମ— ରାଜ ଯୁଧିଷ୍ଠିର
କରୁଥିଲେ ରାଜପଣ,
ଏହିଠାରେ ପରା ରାଜସୂୟ ଯଜ୍ଞ
ହୋଇଥିଲା ଅନୁଷ୍ଠାନ ।
ଆର୍ଯ୍ୟଙ୍କ ଗୌରବ ଆର୍ଯ୍ୟଙ୍କ ବିଭବ
ହୋଇଥିଲା ଯା ବିକାଶ,
ଯୁଗ ଯୁଗାନ୍ତରେ ସର୍ବଧ୍ୱଂସୀ କାଳ
କରି ପାରୁନାହିଁ ନାଶ ।

ଦେଶ ଦେଶାନ୍ତରୁ ସ୍ୱଜଗଣ ଅଛି
ଖଟୁଥିଲେ ପଦତଳେ,
ନାହିଁ ଆର୍ଯ୍ୟସତ୍ତ୍ୱ ଭାଗ୍ୟ-ରବି ଅଜ
ବୁଡଛନ୍ତି ଅସ୍ତାଚଳେ ।
ଶକ୍ତି ସ୍ୱରୂପିଣୀ କନ୍ୟା ସଂଯୁକ୍ତାଙ୍କୁ
ଜୟଚନ୍ଦ୍ର ଅପମାନ
କରି, ଖୋଲିଗଲେ ଭାରତମାତାର
ଅବନତିର ସୋପାନ ।

ପୃଥୁ ରାଜାଙ୍କର ରାଜଧାନୀ ଥିଲା
ଏହି ଯେ ଦିଲ୍ଲୀ ନଗରୀ,
ତବେ ଅତୁଳନା ଆର୍ଯ୍ୟ ଗୌରବିଣୀ
ଏବେ ଯବନ କିଙ୍କରୀ ।
ବିଦେଶୀ ଯବନେ ପାଇ ପତିରୂପେ
ତରି ମରି ଖଟେ ନିତି,
ବାହ୍ୟ ଚାକଚକ୍ୟେ ମଣ୍ଡିଅଛୁ ଅଙ୍ଗ
ମୁଖେ ନାହିଁ ପୂର୍ବ ଜ୍ୟୋତି ।

ହେ ଭାବୁକମଣି ! ଶୁଣିବାକୁ ଚାହଁ
ଯଦି ତା ମରମ ବାଣୀ ।
ଦଣ୍ଡେ ବସ ଏଥି କଳକଳ ଛଳେ
କହେ ଯା ସୂର୍ଯ୍ୟନନ୍ଦିନୀ ।

"କାହିଁ ଗଲା ମୋର ଗୌରବ-ବିଭବ
କାହିଁ ଗଲା ସୁଖରାଶି ।
ଆର୍ଯ୍ୟ ରାଜାଙ୍କର ଅଭିନେତ୍ରୀ ବୃନ୍ଦ
ଏବେ ଯବନର ଦାସୀ ।

ବୃଥା ଗରବେ ଟେକି ହୁଅ ନର
କରୁଅଛ କେତେ ତାଣ,
ଆଜର କଥା ତ କାଲକୁ ନ ଥିବ
ଧନ୍ୟ ଘଡ଼ିଏ ଘଡ଼ିଏ ଆନ ।

ନାଟକ ଅଟଇ ଭବଲୀଳା ଭାଇ
ଭବ ଏହି ରଙ୍ଗାଳୟ,
ଅଛୁ ପୁଷ୍ପପରି କେତେ ନରନାରୀ
କରନ୍ତିଲେ ଅଭିନୟ ।
କାର୍ଯ୍ୟ ଅନୁରୂପେ ତାଙ୍କ ନାମ ଅଛୁ
ଜାଣି ନ ପାରଇ କାଳ,
ଭାଗ୍ୟଭୋଗ୍ୟା ଧରା କାହାର ନୁହେଁଟି
ମାଟି ତ ମାଟି କେବଳ ।"

ସସମ୍ଭ୍ରମେ ଶୂର ଉପନୀତ ହେଲା
ଯହିଁ ବସେ ବାଦସାହ,
ସିଂହାସନ ପରେ ପଡ଼ଇ ଆଲୋକ
ବେଢ଼ିଛନ୍ତି ଓମରାହ ।

ସ୍ୱର୍ଗ ବିଦ୍ୟାଧରୀ— କିଣା ନର୍ତ୍ତକୀଏ
କରୁଛନ୍ତି ଗୀତ ନାଟ,
ଦେଖି ପ୍ରତେ ହୁଏ ଦେବରାଜେ ତତ
ଅବା ବୃତ୍ରାସୁର ଥାଟ ।

ଯାର ହସ୍ତ ଯେତେ ରକ୍ତେ ପ୍ରକ୍ଷାଳିତ
ସେ ଅଟଇ ସେତେ ବୀର,
ଫୁଲର ଫୁଲର କହୁଛନ୍ତି କଥା
ସଗରବେ ଝାଙ୍କି ଶିର ।

ଜାନୁପାତ କରି ଜଣାଇଲା ଦୂତ
"ଶୁଣ ହେଉ ଜାହଁପନା,
ଶାସନୁଁ ଅଦେଶ ଚିତୋର ଈଶ୍ୱର
କରନ୍ତି ନାହିଁ ତ ହେନା ।
ବିଧର୍ମୀ ପାପିଷ୍ଠ ବୋଲି ମହାରାଣା
ହଜୁରଙ୍କୁ ଦେଲା ଗାଳି ।
ରସନାରେ ତାହା ଆଣି ନ ଯୋଗାଏ
ଯବନ-ରାଜ-ମଣ୍ଡଳି !"

ଘୁର୍ଣ୍ଣିତ କେଶରୀ ଜାଗିଲା ପରାୟେ
ହୋଇ କୋପଯୁକ୍ତ ମନ,
ଡାକ ଦେଲା ଅଲ୍ଲା 'ସାଜ ସାଜ' ବୋଲି
ନିଜ ସଇନେ ବଦନ ।

ଚତୁରଙ୍ଗ ସେନା    ପଦାଘାତେ ମହୀ
ଚୂର୍ଣ୍ଣ ହେଲା ଥର ଥର,
ବାଜେ ରଣ-ବାଦ୍ୟ    ସ୍ୱରୁ ପାଏ ଖେଦ
ଭେଁ ଭେଁ ସ୍ୱନେ ବାଜେ ତୂରୀ ।

ସଚଳ ପର୍ବତ    ଗର୍ଜିଲେ ମାତଙ୍ଗ
ଦୋଳାଇ ଦେହ ବିଶାଳ,
ପଦାତିକଗଣେ    ନାନା ଅସ୍ତ୍ରେ ସାଜି
ପୃଷ୍ଠରେ ବାନ୍ଧିଲେ ଢାଲ ।

ଝଲୁଛି ଟୋପର    ମସ୍ତକ ଉପର
ଯଥା ଶୂନ୍ୟେ ମେଘମାଳା,
କି ଅବା ଚପଳେ    ଊର୍ମିମାଳୀ କୋଳେ
ସଘନେ କରଇ ଖେଳା ?

ଅଶ୍ୱ ଖୁରାଘାତେ    ଶୁଣି ହୁଏ ଭ୍ରମେ
ପ୍ରଳୟକାଳ ପବନ,
ଝକମକ ଝକ    ଅସ୍ତ୍ର ଅଭ୍ର ଦେଖି
ଲଜ୍ଜା ପାଉଛି ତପନ ।

ଜୟୋଲ୍ଲାସମୁଖେ    କଲେ ଅଭିଯାନ
ସ୍ଥାନ ସ୍ଥାନରେ ଛାଉଣି,
ହୋଇଲା ସ୍ଥାପିତ    ଦେଖି ସ୍ତମ୍ଭୀଭୂତ
ଅରଣ୍ୟବାସୀ ପ୍ରାଣୀ ।

ନିବିଡ଼ ବନରେ ସୃଷ୍ଟି ହେଲା ତାଙ୍କ
ଅପରୂପ ଏ ନଗରୀ
ମାୟାପୁରୀ ସମ ଜନେ କ୍ଷଣେ ରହେ
ପୁଣି ଚାଏ ନାଏ ଘର ?
ପଶୁ ପକ୍ଷୀଗଣ କରନ୍ତି ଗର୍ଜଣା
ଯାର ଯେତେ ବୁଦ୍ଧିମାତ୍ରା,
ଅସମର୍ଥ ହୋଇ ଘେର ଜଙ୍ଗସ୍ଥାନେ
କରିଲେ ଜୀବନଯାତ୍ରା ।

ସାଗର ଲହରୀ ପ୍ରାସେ ମାଡ଼ି ଆସି
ପୂର୍ଣ୍ଣ ହେଲା ସ୍ଥଳସ୍ଥାନ,
ଅରଣ୍ୟ ପ୍ରାନ୍ତର ତୃଣଶୀକ ହେଲା
ଶୂନ୍ୟ ଜଳାଶୟମାନ ।
ଯବନ ସଇନ ଶୃଙ୍ଖଳା ବନ୍ଧନ
ହିନ୍ଦୁ ଦ୍ୱେଷୀ ଧର୍ମ ଭାର,
ଯାହା ଦେଖେ ଲୁଟେ ରାଜପୁତନାରେ
ପଡ଼ିଗଲା ହାହାକାର ।

ଅପି ଅବଶେଷେ ଚିତୋର ପାଖୁଣେ
ଧରିଲା ସଂଗ୍ରାମ ବେଶ ।
ରାଜପୁତ ବୀରେ ପ୍ରାଚୀରରେ ଛୁଟି
ଅଙ୍କୁସିଲେ ବୀରବେଶ;

ଅସଂଖ୍ୟ ଭୁଜଙ୍ଗ ଦେଖି ପ୍ରୀତ ହୁଏ
ଯେଉଁବରେ ପକ୍ଷୀରାଜ,
ତେଜସ୍ୱ ମାନବ ମନେ ଶଙ୍କା କରି
ଯୁଦ୍ଧାର୍ଥେ ହୋଇଲେ ସଜ ।

ହିନ୍ଦୁ ଯବନରେ ଲାଗିଗଲା ଓହୋ !
ମହାଭୟଙ୍କର ରଣ,
ଯବନ ପକ୍ଷରୁ ଅଗ୍ନିଗୋଳା ଅସ୍ତ୍ର
ନଗର କରେ ଦହନ ।

ନିର୍ଭୀକ ହୃଦୟ ବୀରଗଣ ଦମ୍ଭେ
ବିଧର୍ମୀ ସଙ୍ଗରେ ରଣ ?
କରୁ କରୁ ଅହା ! ମୁଦିଲେ ନୟନ
ଦେଶ ହିତେ ଦେଲେ ପ୍ରାଣ ।

ରାମ ରାବଣର ଯୁଦ୍ଧ ରାମାୟଣେ
ହୋଇଛି ଯଥା ଲିଖିତ,
ଅବା ଯାଜ୍ଞସେନୀ ସ୍ୱୟମ୍ବରେ ରଣ
ବ୍ୟାସଦେବଙ୍କ ବର୍ଣ୍ଣିତ ।

ସେ ପୁରାଣ ଗାଥା ପ୍ରତ୍ୟକ୍ଷ ହେଉଛି
ଅଛି ରାଜପୁତାନାରେ,
କେହି ନୁହେ ଊଣା କାହାଠୁ ଜନମେ
ଯୁଝିଲେ ପରସ୍ପରେ ।

ବହୁକାଳ-ବ୍ୟାପୀ     ଯୁଦ୍ଧେ ଉଦୟପୁର
ହେଲା ବହୁଲୋକ କ୍ଷୟ,
ସବୁଠାରୁ ହେଲା     ଚିନ୍ତାର ବିଷୟ
ଖାଦ୍ୟ ଅଭାବର ଭୟ ।

ଆହାର ଅଭାବେ     କେତେ ହାତୀ ଘୋଡ଼ା
ମଲେ ଯେ ଧାଡ଼ି ଧାଡ଼ି,
ପଛଗନ୍ଧେ ପୂର୍ଣ୍ଣ     ହୋଇଲା ନଗରୀ
ଶବ ସଂଖ୍ୟା ଗଲା ମାଡ଼ି ।

ବିଗତ ମାଧୁରୀ     ହେଲା ନଗରୀର
କାନ୍ଦନ୍ତି ନଗରବାସୀ,
ସୌଭାଗ୍ୟ ତପନ     ଅସ୍ତେ ଉପସ୍ଥିତ
ଅଭାଗ୍ୟ ଯାମିନୀ ଆସି ।

ଭୀମସିଂହ ସ୍ୱୟଂ     ପ୍ରଜାଦୁଃଖ ଦେଖି
ଦୁଃଖୀ ହେଲେ ମହାମନା,
ସଙ୍କଟ ନିମନ୍ତେ     ମନ୍ତ୍ରୀଗଣ ସହ
ଗୋପନେ କଲେ ମନ୍ତ୍ରଣା ।

ଏଣେ ଯବନର     ଶିବିର ମଧ୍ୟରେ
ହେଲା ମଧ୍ୟ ମହାମାରୀ,
କେହୁ ତ କାହାର     ବଶକୁ ନ ଆସେ
ହେଲେ ସର୍ବେ ସ୍ୱେଚ୍ଛାଚାରୀ ।

ପଙ୍ଗପାଳ ଭୁଞ୍ଜି ଶସ୍ୟକ୍ଷେତ୍ର ସବୁ
କରି ଦେଲେ ତ ବିନାଶ,
ପଳାଇଲେ ପ୍ରଜା ନିଜସ୍ଥାନ ଛାଡ଼ି
ଚିତ୍ତରେ ଲଭିଣ ତ୍ରାସ ।
ବୃଷ୍ଟି ଅଭାବରେ ଧନଲକ୍ଷ୍ମୀ ରାଜ୍ୟ
ଦିଶେ ଯଥା ମରୁସ୍ଥାନ,
ଆହାର ଅଭାବେ ଯବନ ସୈନ୍ୟର
ବ୍ୟାକୁଳିତ ହେଲା ପ୍ରାଣ ।

ଦିନୁ ଦିନୁ ସର୍ବେ ହୀନବୀର୍ଯ୍ୟ ହେଲେ
ଦେଖି ସ୍ୱପକ୍ଷ ଅବସ୍ଥା,
ଯବନ ରାଜାର ହୃଦୟେ ଉଦୟ
ହୋଇଲା ଗଭୀର ବ୍ୟଥା ।
ଚିନ୍ତା କଲେ "ଛି ଛି ଏକ ନାରୀ ପାଇଁ
ଘଟିଲା ଏତେ ଅନର୍ଥ,
ଏକବାର ଯଦି ନ ଦେଖିବି ତାକୁ
ସମସ୍ତ ହେବ ବ୍ୟର୍ଥ ।

ଲୋଡ଼ା ନାହିଁ ଧନ ଚାହେଁ ନା ରତନ
ନ ଚାହେଁ ଚିତୋର ରାଜ୍ୟ,
ଦେଖି ପଦ୍ମିନୀକୁ ପ୍ରସ୍ଥାନ କରିବି
ଏହି ବାକ୍ୟ ମୋର ଧାର୍ଯ୍ୟ ।"

ଏତେ ଭାବି ଅଲ୍ଲା ଲେଖି ପଠାଇଲା
ଚିତୋର ରାଜସଦନେ,
ପତ୍ର ପଢ଼ି ରାଜା ଚିନ୍ତାଗ୍ନି ଦ୍ୱିଗୁଣେ
ଜଳି ଉଠିଲା ଯେ ମନେ ।
ଦୂତକୁ ମେଲାଣି ଦେଇ ନରନାଥ
ଭାଙ୍ଗିଦେଲେ ଦରବାର,
ଗଣ୍ଡେ ହସ୍ତ ଦେଇ ମାନ୍ଦେଲରେ ବସି
ହୃଦେ କରନ୍ତି ବିଚାର,

ଭାବନ୍ତି "ହା ମୋର ପଦ୍ମିନୀ ସତୀଙ୍କୁ
ଅଲ୍ଲାଉଦ୍ଦୀନ ଦେଖିବ ?
ଧିକ ସୂର୍ଯ୍ୟବଂଶ କ୍ଷତ୍ରିୟ କୁଳରେ
ଅପଯଶ ରହିଯିବ ।
ଧିକ ବାହୁବଳ ଧିକ ଏ ଜୀବନ
ଗଲେ ଯାଉ ରାଜ୍ୟ ଧନ,
ପାପିଷ୍ଠ ଯବନ ଦୃଷ୍ଟିରେ ପଦ୍ମିନୀ
ନ ପଡ଼ିବେ କଦାଚନ ।

ଛାରଖାର ହେଉ ଚିତୋର ନଗରୀ
ମରନ୍ତୁ ସବୁ ସନ୍ତାନ,
ଯା ହେବାର ହେଉ ନ ହୋଇବ କେବେ
ସୂର୍ଯ୍ୟବଂଶ ଅପମାନ ।"

ଚନ୍ଦ୍ରା ପାପୀୟସୀ        ଷମତା ପ୍ରକାଶି
ରାଜାଙ୍କୁ କଲା କାତର,
ବ୍ୟାକୁଳ ଅନ୍ତରେ        ରାଜ ଭବନକୁ
ଦେଲେ ରାଜା ଅଗ୍ରସର ।

ପାଦେ ଯାଇ ପୁଣି        ଲେଉଟି ବସନ୍ତି
କରାଘାତ କରି ଶିରେ,
ଧଇର୍ଯ୍ୟ ଡୋରରେ        ମନ ବାନ୍ଧି ପୁଣି
ଗଚ୍ଛ କଲେ ଧୀରେ ଧୀରେ ।

କବି କହେ ଧିକ୍        ଧିକ୍ ଚନ୍ଦ୍ରା ତୋରେ
କି ଖେଳା ଖେଳୁ ରଙ୍ଗିଣୀ,
ମୁହୂର୍ତ୍ତେ ମୁହୂର୍ତ୍ତେ        ଲୁଚେ ଦେଉ ଉଦେ
ଯଥା ଆକାଶେ ଦାମିନୀ ।

କେଉଁଠାରୁ ଆସୁ        କେଉଁଠାକୁ ଯାଉ
କେଉଁଠାରେ ତୋର ବାସ ?
ତୋର ମାୟାବଳେ        ଦେବାସୁର ନର
ସକଳେ ଲଭନ୍ତି ତ୍ରାସ ।

ଏତ ଅଛୁ ଭୂତ        ଏତ ପୁଣି କାହୁଁ
କେଉଁଠାରୁ ଆସୁ ଯାଉ ?
କବା ଭୁଜଙ୍ଗିକା        ଦେଖାଉ ହୃଦୟେ
ଦେଉ ପରାଣରେ ଦାଉ ।

କେବେ ନବ୍ରାଶାକୁ ଯେଜନ ସଙ୍ଗତରେ
ଦେଖାଦେଉ ବୁଲଷଣେ,
ତସ୍କର ପରିଯେ ହୃଦୟ-ଭବନୁ
ଶାନ୍ତ ଚଢ଼ୁ ଅଲ୍ପଷଣେ ।

ଯେ ପ୍ରଭୁ ମଙ୍ଗଳ— ମଯୁ ମୂଳାଧାର
ତାଙ୍କର ସୃଷ୍ଟି କ ଭୁହ ?
ହୃଦୟକୁ ମୋର ଦୂର ହୁଅ ଚନ୍ତ୍ରେ !
କର ଯୋଡ଼ କହେ ମୁହିଁ ।

## ଚତୁର୍ଥ ସର୍ଗ ।



ଉତ୍କଳ ଭାରତ ! କହ ଦାସୀପ୍ରତ
କ କଲେ ଚତୋର ଲଶ,
ସାଧ୍ୱୀ ମଥାମଣି ସୁନ୍ଦରୀ ପଦ୍ମିନୀ
ସେ ବୋଇଲେ ଅବା ଡସ ?

ଅତ ଦୁରାଶା ତ କରଛୁ ମୋ ମନ
ବଜାଇବ ତବ ବୀଣା,
ମନ୍ଦ ବକ୍ର ଭାଗ୍ୟେ ଜନସମାଜରୁ
ଉପହାସ ଲଭ୍ୟ ସିନା ।



Digitized by PPRACHIN, SOA

ସ୍ୱେତ ପଦ୍ମାଳୟା ! ପାଦପଦ୍ମତଳୁ
ପାଖୁଡ଼ାଏ ଦେଉ ଯାରେ,
ମୂଳ ତବ ପଦ ଲଭଇ ଅକ୍ଳେଶେ
ଖଣାଛ ପାଏ ସମାଜରେ;
ସେ ପାଖୁଡ଼ା ପ୍ରାପ୍ତ ହେବାକୁ ମୁଁ ଯୋଗ୍ୟା
ନୁହଇ ଅଗୋ ଜନନି !
ପଦ୍ମନାଭ ତଳ ପଙ୍କରୁ ଟୋପାଏ
ଭିକ୍ଷା ମାଗଇ ଦୁଃଖିନୀ ।

ସେ ପବିତ୍ର ପଙ୍କ ଚନ୍ଦନ ସ୍ୱରୂପେ
ଶୋଭିବ ମୋର ଲଲାଟ,
ସନ୍ତାନର ଅଳି ଯେଣ ଗୋ ଜନନି !
ମନେ ନ. ରଖ କପଟ ।

ଦିଅ ବା ନ ଦିଅ ଅଧମା ସୁତାକୁ
ପୋଷିଛୁ ତ ତର ଅଶା,
ଅସି ବାକ୍ୟଦେବୀ ! ବସ ମୋ କଣ୍ଠରେ
ମୂକ ତୁଣ୍ଡେ ଦିଅ ଭାଷା ।

ଯଥା ଭଗୀରଥ ଶଙ୍ଖଧ୍ୱନି କରି
ନେଇଥିଲେ ସୁରଧୁନୀ,
ତଥା ଅଇ ଦେବୀ ତବ ବୀଣାନାଦେ
ମୋ ହୃଦୁ ନିଅ ପଦ୍ମିନୀ ।

ରାଣୀହଂସ ପୁରେ ବିଜୟୀ ରାଜନ
ମୁଖ ଦିଶଇ ମଳିନ,
ହେମନ୍ତ ଆଗମେ ସରେ ପଙ୍କଜିନୀ
ଯଥା ହୁଏ ଶୋଭାହୀନ ।

ପଦ୍ମିନୀଙ୍କୁ ଧୀରେ ସମ୍ବୋଧି ଭାଷନ୍ତି
ଶୁଣ ଶୁଣ "ଗୁଣବତି !
ଧିକ ମୋ ଜୀବନ ଧିକ ରାଜପଣ
ଏ କରମ ମନ୍ଦ ଅଛି ।

ଲଲାଟରେ ଯାହା ଲେଖା ଥିବ ତାହା
କହ କେ କରିବ ଆନ,
ଦିନେ ହେଲେ ଭୋଗ ହୋଇବ ଜୀବନେ
ବିଧି କଲେ ହୀନମାନ ।

ଯବନ ସମ୍ରାଟ ପଠାଇଛନ୍ତି ଦୂତ
ତୁମ୍ଭଙ୍କୁ ଦେଖିଣ ବାରେ,
ପ୍ରସ୍ଥାନ କରିବ ମୁଁ ଶରୀର ବହି
ସମ୍ମତ କି ହୋଇପାରେ ?

କି କରିବି ଏବେ କିସେ ଶୁଭ ହେବ
ଭାବି ନ ପାରୁଛି କୂଳ,
ପ୍ରଜାଙ୍କର ଦୁଃଖ ଦେଖି ଦେଖି ଚିତ୍ତ
ସତତ ହୁଏ ଆକୁଳ ।

ପଦ୍ମବାଣୀ ଶୁଣି ଉତ୍ତରିଲେ ବାମା
"ଧିକ ମୋହର ଜୀବନ,
ଧିକ ଏ ରୂପକୁ ଯାର ପାଇଁ ହତ
କେତେ ଜୀବ ଅକାରଣ ।
ସାମାନ୍ୟ ଲୋକର ପ୍ରିୟା ହୋଇଥିଲେ
କେବା ଜାଣନ୍ତା ଖବର,
ଉଚ୍ଚବୃକ୍ଷେ ଥିବା ଉଚ୍ଚ ପରବତେ
ବଜ୍ର ମାରେ ବଜ୍ରଧର ।

କେତେ କେତେ ରନ୍ଧ୍ରେ ପୂରୁଅଛୁ ଖଣି
ତାହା କିଏ ବା ଲୋଡ଼ଇ,
ଧନୀ ରମଣୀର ଗଳାର ମାଳାରେ
ଚୋରର ମନ ରହଇ ।
ରାଜ୍ୟର ମଧ୍ୟରେ ମୁହିଁ କି ସୁନ୍ଦରୀ ?
ନା ନା ମୁଁ ଯେ ରାଜପ୍ରିୟା,
ତେଣୁ କି ଯବନ ବଳାଇଛି ମନ
ଜଡ଼ କମ୍ପୁଅଛି ବୃଥା ।

ଅନଳେ ପଶିବ ନୈଷଧ ନଳର
ଫଳିବ ଇଷ୍ଟେ ସୁଫଳ,
ଶାନ୍ତି ବିରାଜିବ ପ୍ରଜାବନ୍ଧୁ ଯିବ
ପୁନଶ୍ଚ ଯାଇବେ ବଳ ।"

ଏତେ କହି ସତୀ    ଛଳ ଛଳ ନେତ୍ରେ
ଧଇଲେ ପତିର କର,
"ତ କହିଲ ପ୍ରିୟେ    ଉଚ୍ଛୁଳ ପଡ଼ିଲା
ହୃଦୟ ଦୁଃଖ-ସାଗର ।"
ବୋଲି ଭୀମ ସିଂହ    ଭିଡ଼ିଲେ ମହିଷୀ
କହିଲ ଯାହା ପ୍ରମାଣ,
ଶ୍ୱେରଠାରେ କେବେ    କେବେ ଧର୍ମାଜନ
ହରାଇ ଥାଏ ପରାଣ ।

କିନ୍ତୁ ପ୍ରିୟତମେ !    ଆଗତ ବିପଦୁଁ
କେମନେ ଲଭିବା ତ୍ରାଣ,
କେମନ୍ତେ ଯବନ    ଦେଖିବ ତୁମ୍ଭଙ୍କୁ
"ରକ୍ଷା ହେବ କି ସେ ମାନ" ?

ପ୍ରତ୍ୟୁତ୍ତର କଲେ    ନାସ୍ତ୍ରିକୁଳ ଧନ୍ୟା
"ଶୁଣ ଅହେ ପ୍ରାଣେଶ୍ୱର !
ଚତୋର ରାଜାଙ୍କୁ    ପରାମର୍ଶ ଦେବା
ମୋର ବୁଦ୍ଧି ଅଗୋଚର ।

ରମଣୀ ବୁଦ୍ଧିରେ    ଯାହା ଅସେ କହେ
ଅଣାଅ କାଚ ଦର୍ପଣ,
ଗୃହ ଅଭ୍ୟନ୍ତରେ    ରହିବ ଏ ଦାସୀ
ସଙ୍ଗେ ଥିବେ ସଖୀଗଣ ।

ପ୍ରତିକମ୍ପ ହେବ ମୁଖରେ ଅନ୍ଧୃତ
ଗୋପନେ ରହିବ କାୟା,
ଅନ୍ୟ ଗୃହେ ଥାଇ ତବ ସଙ୍ଗେ ନାଥ
ଯବନ ଦେଖୁ ସେ ଛାୟା ।
ନ ରହୁ କଳଙ୍କ ଧନ୍ୟ ସୂର୍ଯ୍ୟବଂଶେ
ଭାଙ୍ଗିଯାଉ ଏ କଳହ,
ପୁଣି ଶାନ୍ତିଦେବୀ ଭୁଞ୍ଜି ଅଧି ରାଜ୍ୟେ
ରହିଥାନ୍ତୁ ଅହରହ ।”

ଶୁଣି ନରମଣି ଭାଷିଲେ ସସ୍ନେହେ
ଧନ୍ୟ ଧନ୍ୟ ପ୍ରାଣପ୍ରିୟା,
କି ଅମୃତ ଧାର ଢାଳିଲ ବଚନେ
ଶାନ୍ତ ହେଲା ତପ୍ତ ହିୟା ।
ଖୋଲ ଖଞ୍ଜନ ନୟନେ ଭ୍ରମର
ଅଛୁ କି ଗୋ ଏତେ ଦୂରେ ?
ଯବନ ସମ୍ରାଟ ଏଠାକୁ ଆସିଲେ
ପୂଜା ହୋଇବ ଅଶୁଭେ ।

ସ୍ୱତନ୍ତ୍ରରେ ଗୃହ ନିର୍ମାଇବ ବୋଲି
କହାଇଲେ ନରେଶ୍ୱର,
ଯବନ ଶିବିରେ ପଠାଇଲେ ଦୂତ
ଲେଖି ସବୁ ସମାଚାର ।

ମନ୍ତ୍ରୀଗଣ ସଙ୍ଗ          ମନ୍ତ୍ରଣା କରଣେ
ମୁକୁରେ କଲେ ନିର୍ମାଣ
ଅପରୂପ ପୁରୀ          ଯେଠାରେ ସଖୀଙ୍କୁ
ଦେଖିବ ଅଲ୍ଲାଉଦ୍ଦୀନ ।



ଅଲ୍ଲାଉଦ୍ଦୀନର          ଭାଗ୍ୟାକାଶେ ଆଜି
ଉଦିତ ସୁଖ-ତପନ,
କେତେବେଳେ କେବେ          ଦେଖିବ ପଦ୍ମିନୀ
ଭାବି ମନ ଉଚାଟନ ।
ଯାହାର କାରଣେ          ସୈନ୍ୟ କ୍ଷୟ କରି
ସହିଥିଲା ଏତେ ଦୁଃଖ,
କଳ୍ପନା ନୟନେ          ଦେଖୁଥିଲା ଯାହା
ଆଜି ଦେଖିବ ତା ମୁଖ ।
ଦଣ୍ଡକ ସମୟ          ଯୁଗ ପ୍ରାୟ ହେଲା
ଭାବି ମନ ଛନଛନ,
ଚିନ୍ତୁଅଛି ମନେ          ସୁବେଶ ହୋଇଣ
ମୋହିବ ପଦ୍ମିନୀ ମନ ।
ତାଙ୍କୁ ବୁଝିବ ରେ          ବିଧର୍ମୀ ଯବନ
ପାପାତ୍ମସ୍ୱ ମୃତ୍ୟୁମନ୍ତ୍ର,
ସତୀର ସର୍ବସ୍ୱ          ହୃଦୟ ରତନ
ପରମ ଦେବତା ପତି ।

କେବଳ ପ୍ରାଣେଶ          "ପ୍ରେମାକାଙ୍କ୍ଷିଣୀ ସେ
ପତି ପ୍ରେମଧନେ ଧନୀ,
ସବୁ ଭୁଲ ମଣେ          ମୂଳ ଲକ୍ଷ୍ୟ ପତି
ହୃଦାକାଶେ ଦିନମଣି ।

ରବିଙ୍କ ଦର୍ଶନେ          ଫୁଟଇ କମଳ
ଚନ୍ଦ୍ରେ ଦେଖି କୁମୁଦିନୀ,
ସ୍ୱାମୀଙ୍କ ଦର୍ଶନେ          ପ୍ରୀତା ହୁଏ ସତୀ
ଘନେ ଦେଖି ଶିଖଣ୍ଡିନୀ ।

ଯେ ସ୍ୱର ରତନ          ତାହାର ନିକଟେ
ମଣି ଯଥା ଧୂଳିକଣା,
ସ୍ୱର୍ଗୀୟ ପ୍ରଭାବ          ମୁଖେ ଫୁଟଇ
ପାପୀ ହୁଏ ପଥ ବଣା ।

ଚିତୋରେ ବିଜୟ          ହେଲେ ଦିଲ୍ଲୀଶ୍ୱର
ସଙ୍ଗେ ଘେନି ସହଚର,
ସସମ୍ଭ୍ରମେ ଆସି          ପାଛୋଟିଣ ନେଲେ
ଭୀମ ସିଂହ ଅଧୀଶ୍ୱର ।

ଏକାନ୍ତେ ତାହାକୁ          ଘେନି ଖୋଲି ଦେଲେ
ମୁକୁରର ଆବରଣ,
ଚକିତେ ଅଙ୍କାର          ଦର୍ପଣ ଉପରୁ
ପତିତ ହେଲା ନୟନ ।

ମନେ କଲ୍ପ ପ୍ରଥେ   ହଏ ବା କନକ—
ପ୍ରତିମା ଯାଇଛୁ ଥୋଇ,
ନା, ନା, ଏ ଜୀବନ୍ତ   ଲାବଣ୍ୟ ସରବେ
ମୀନ-ନୟନ ଖେଳଇ ।
ଏ ବୁଝିବ ଦୁଷ୍ଟ   ଯବନ ଈଶ୍ୱର
ସତୀର ରୂପ ଗରିମା,
ପ୍ରତିଲୋମେ ଯାର   ପ୍ରକଷ୍ଟ ଚରିତ୍ର
ପରମ ଚିତ୍ତା ମହିମା ।

ପୁଣି ଚକ୍ଷୁ ମେଲି   ଦେଖିଲା ସମ୍ରାଟ
ସେ ମୂରତି ଭାବାନ୍ତର,
ଛାଡୁଛି କଟାକ୍ଷ   ଯଥା ଭୁଜଙ୍ଗମ
ଗରଳ କରେ ଉଦ୍ଗାର ।
ଘୃଣା, ଦ୍ୱେଷ, କ୍ଷୋଭେ   ଆରକ୍ତିମ ବେଶ
ଧରିଅଛି ଯେ ଭାମିନୀ,

ଅସୁର ଯୁଦ୍ଧରେ   ରୁଦ୍ରବେଶ ଧରେ
ଯଥା ଅସୁର-ଦଳନୀ ।
ସେ ମୂରତି ଦେଖି   ଚମକିଲା ଶାହ
ନ ବୁଝିଲା ମୂଢ଼ମତି ।
ଏ ବୁଝିବ କହ   କାମାନ୍ଧ ଦୁର୍ଜନ
ପାପକର୍ମେ ଯାର ମତି ।

ଟେକ ଲାଗି ମାର  ଘରେ ଜରଜର
କରନ୍ତି ସମ୍ରାଟ ତନୁ,
ଏବେ କହେ ଧନ୍ୟ  ତୁହି ବଶ୍ୱଜୟୀ !
ଧନ୍ୟ ତୋର ପୁଷ୍ପଧନୁ !

ଏ ତ୍ରୈଲୋକବିଜୟୀ  ଲଙ୍କେଶ ରାବଣ
ତାହାଙ୍କୁ କର ଜର୍ଜର,
ଏକ ସୀତା ପାଇଁ  ତୁହି ସେ ନେଲୁ
ଲଙ୍କାପୁରୀ ଛାରଖାର ।

ଏ ଯେ ଦିଲ୍ଲୀଶ୍ୱର  ଶତ ରଣେ ଯାର
ଟଳେ ନ କମ୍ପଇ କାୟା,
ତାହାର ହୃଦୟ  କମ୍ପାଇଲୁ ତୁହି
ଧନ୍ୟ ଧନ୍ୟ ତୋର ମାୟା !

———

## ପଞ୍ଚମ ସର୍ଗ ।



ସୌଜନ୍ୟ ମୂରତି  ଭୀମ ସିଂହ ରାୟ
ଦିଲ୍ଲୀଶ୍ୱର ସଙ୍ଗତରେ,
ଶଙ୍କାଶୂନ୍ୟ ମନେ  ପ୍ରବେଶ ହୋଇଲେ
ବଇଠି ସଭା ମଧ୍ୟରେ ।

—ପଦ୍ମିନୀ

ଖିଲି ଅବତାର          ଯବନ ଈଶ୍ୱର
ଅଭିଲାଷ ଥିଲା ମନ,
ସନ୍ଧି ଅନୁରୋଧେ          ଆସିଥିଲେ ଭୀମ
ନ ବୁଝି ତାହାର ଛଳ ।

ଦୁର୍ଜନ ସମ୍ରାଟ          ନିଃସହାୟ ପାଇ
ବଳେ କଲେ ବନ୍ଧନ,
ଭାଷଇ ରାଣାଙ୍କୁ          "ତବ ପଦ୍ମିନୀକୁ
ଆଣି କର ପ୍ରତ୍ୟର୍ପଣ,
ଅନ୍ୟଥା ହୋଇଲେ          ସର୍ବାଗ୍ରେ ତୁମ୍ଭର
ଶିର ହୋଇବ ଛେଦନ,
ଛାରଖାର ହେବ          ଚତୋର ନଗରୀ
ଅଗ୍ନିରେ ହେବ ଦହନ ।"

ଭୀମ ସିଂହ ନୃପ          ସିଂହ ପ୍ରାୟ ଗର୍ଜି
ବୋଲନ୍ତି "ତୁ ହୋଇ ଶ୍ୱାନ,
ଯାଚ୍ଛ ହବ ଅଂଶ ?          ଏହି ମାତ୍ର ତୋ ରେ
ଦଣ୍ଡ ଅଛି ତୋ କୋପନ.

ଛଦା ଖର ଭୟ          ଦେଖାଉ ରେ ମୂଢ଼ !
ବୀରର ପ୍ରିୟ ମରଣ,
କେତେ କେତେ ବୀର          ଚତୋରେ ଅଛନ୍ତି
ଶିକ୍ଷା ଦେବେ ରେ ଯବନ ।"

ହୋମରେ ଅହୁତି    ଦେଲ ପ୍ରାୟେ ଆଜ୍ଞା
ରାଗେ ହୋଇ ଗର ଗର
କାରାଗାରେ ରଖି    ପଠାଇଲ ବାର୍ତ୍ତା
ଚିତୋର ରାଣୀ ପାଖର ।

"ସାତ ଦିନ ମଧ୍ୟେ    ଆତ୍ମ ସମର୍ପିତା
ଯଦି ନ ହୋଇବେ ରାଣୀ,
ସପ୍ତମ ଦିବସ    ଅନ୍ତେ ଭୀମ ସିଂହ
ଶିର ପକାଇବି ହାଣି ।"

ଚିତୋର ନଗରେ    କାହିଁ ହୋଇଲା ରେ
ବିନା ମେଘେ ବଜ୍ରପାତ,
ହାହାକାର ରବେ    ପୂରିଲ ନଗର
ବହେ ଶୋକ-ଝଞ୍ଜାବାତ ।

ମୋହପ୍ରାପ୍ତ ହୋଇ    ପଦ୍ମିନୀ ସୁନ୍ଦରୀ
ଲୋଟନ୍ତି ଧରା ଉପର.
ସଖୀ ପରିଚାରୀ    ମୁଖେ ଜଳ ସିଞ୍ଚି
ସେବା କରନ୍ତି ବିସ୍ତର ।

ଧୀରା ସୁଲକ୍ଷଣା    ଧର୍ମବତୀ ଯେନ୍ତୁ
କେତେକ୍ଷଣ ତାର ଶୋକ,
ମୋହ ଭଙ୍ଗ ଅନ୍ତେ    ଦର୍ଶିଲ ପଦ୍ମିନୀ
ନେହେ ପ୍ରକୃତି ଅନେକ ।

ପାଢ଼ ମିଶ୍ର ମନ୍ତ୍ରୀ ଡାକାଇ ଗୋପନେ
କଲେ ଏକ ଦରବାର,
ତ କୌଶଳେ ରାଜା ଯବନ ସମ୍ରାଟ
ହସ୍ତୁ ଲଭିବେ ଉଦ୍ଧାର ।

ବନ୍ଧୁ ତର୍କ ପରେ ସ୍ଥିର ହେଲା ସତ୍ୟ
ଲେଖିବେ କପଟ ଲେଖା,
ଦିଲ୍ଲୀଶ୍ୱର ସଙ୍ଗେ ଯିବେ, ରାଜା ସଙ୍ଗେ
କରିନେଇ ଶେଷ ଦେଖା ।

ଗୋରା ନାମେ ଜ୍ଞାତି ଏକ ରାଜାଙ୍କର
ପଦ୍ମବାହକଙ୍କର ଭାର,
ନେବେ, ସ୍ଥିର କରୁ ଚତୋର-ଈଶ୍ୱର,
ଭାଙ୍ଗିଦେଲେ ଦରବାର ।

ଯତ୍ତ-ପଦ ସ୍ମର ଜାଗ୍ର କୁଳାଗ୍ରଣୀ
ଯବନ—ଈଶ୍ୱର କଥ,
ଲେଖିଲେ କପଟ ଲେଖା ସଖୀ ସଙ୍ଗେ
ଦେଖାଇ ବନ୍ଧୁ ମିନତି ।

"ଏ ଅନନ୍ତ ବାର୍ତ୍ତା ଅଜ ହେ ଶୁଣିଲୁ
ତନୁ ହେଲା ପୁଲକିତ,
ଦିଲ୍ଲୀର-ଈଶ୍ୱର ରାଜ ରାଜେଶ୍ୱର
ମୋ ପାଇଁ ଅଗ୍ରହାନ୍ୱିତ ।

ଶୁଣ ହେ ସମ୍ରାଟ ମମ ନିବେଦନ
ମୁହିଁ ଅଟେ କୁଳନାରୀ,
ଆମ୍ଭର ଶାସ୍ତ୍ରରେ ଲେଖା ହୋଇଅଛି
ସ୍ୱାମୀ ଅଜ୍ଞାଧୀନା ସ୍ତ୍ରୀ ।

ତଥାପି ତାହାଙ୍କୁ ଯିବ ହେ ଡେକିଣ
ସମ୍ରାଟ ! ତବ ସଦନେ,
ଭିକ୍ଷା ମାଗୁଅଛି ବିମୁଖ ନ ହୁଅ
ଦିଲ୍ଲୀଶ୍ୱର ଶ୍ରୀଚରଣେ ।

ଥରେ ମାତ୍ର ମୁହିଁ ସ୍ୱାମୀଙ୍କୁ ଦେଖିଣି
ଚିର-ବିଦାୟ ହେ ନେବି,
ତା ପରେ ଅବାଧେ ତୁମ୍ଭର ସଙ୍ଗରେ
ଦିଲ୍ଲୀକୁ ନିଶ୍ଚୟ ଯିବି ।

ବହୁ ପରଗୃଷ୍ଟି ଅଛନ୍ତି ମୋହର
ସ୍ନେହେ ହୋଇ ତତପର,
ମାନସ ରଖନ୍ତି ସଙ୍ଗରେ ଯିବାକୁ
ଜଣାଏଁ ତବ ହୁଜୁର ।

କାଳେ ତବ ସୈନ୍ୟ ମୋ ଦାସୀମାନଙ୍କୁ
କରିବେ ବା ଅପମାନ,
ଏଣୁ କରି ସଙ୍ଗେ ଇଚ୍ଛଇ ନେବାକୁ
କେତେକ ରକ୍ଷକ ସୈନ୍ୟ ।”

ଯଥାକାଳେ ପଦ୍ମ ହେଲା କରଗତ
ବହ୍ନୀଶ୍ୱର ଅଜଦରେ,
ସଜନମନ୍ତ, ଭାନୁ ରକ୍ଷୀ ସୈନ୍ୟ ମଜା
ପ୍ରବେଶ ହେଲେ ଶିବିରେ ।

—୪୦—

ଭୀମ ସିଂହ ବାପ୍ପ ସିଂହ ଘର ରୁଦ୍ଧ
ଛନ୍ତି ଯବନ ଶିବିରେ,
ପଦ୍ମିନୀର ପଦ୍ମ ବାର୍ତ୍ତା ଶୁଣି ବନ୍ଦୀ
ପଡ଼ିଲେ ଅଶ୍ରୁ ନୀରରେ ।
ଛନ୍ଦଛନ୍ଦ ଖେଦେ "ହାୟ ! ଏତେ ଦିନେ
ମୋର ଟେକ ହେଲା ଚୂର୍ଣ୍ଣ,
ଯବନ ସମ୍ରାଟ ଅଲ୍ଲାଉଦ୍ଦୀନର
ହେଲା ଏବେ ଇଚ୍ଛା ପୂର୍ଣ୍ଣ ।
କି ଅଦ୍ଭୁତ କଥା ଯବନ ସଙ୍ଗରେ
ଯିବେ ଧନୀ ମୋର ରାଣୀ,
ଧିକ୍ ନାରୀ-ହୃଦ ଅଟଇ ଅପାର
ପଦ୍ମପତ୍ରେ ଯଥା ପାଣି ।
ଏହି କି ଆଦର୍ଶ ସତୀତ୍ୱ ଦର୍ଶନ
କରାଇଲ ଗୋ ପଦ୍ମିନୀ !
ଥିଲା ମୋ ବିଶ୍ୱାସ ହୋଇଲା ହତାଶ
ତୁମ୍ଭେ ମୋ ପ୍ରାଣସଙ୍ଗିନୀ ।

ସତୀ ତୁମ୍ଭଠାରୁ     ଥିଲା ବହୁ ଗୁରୁ
ହ୍ଡ଼ମା-ଗ୍ରାମ ପାଉଛ,
କେ ଜାଣେ ଯବନ     ଭୋଗ୍ୟା ହେବ ତୁମ୍ଭେ
ହାଉଯାଏ ସରସ୍ୱତୀ ।

ଯଦି ଯାଅ ତୁମ୍ଭେ     ଛେଡ଼ି ଅଭାଗାକୁ
ତବ ଅଙ୍ଗେ ଏ ଜୀବନ,
କରବ ବର୍ଜ୍ଜନ     ଥାଉ ତବ ନାମ
ଘୋଷୁଥିବେ ଧରାଜନ ।

ଦୁଶ୍ଚିନ୍ତା ସମୁଦ୍ର     ଅକୂଳେ ଭାସୁଛି
ରାଜାଙ୍କ ହୃଦୟ-ତରୀ,
ଧ୍ରୁବତାରା ରୂପେ     ଦେଖାଦେଲୁ ତୁ ରେ
ପଦ୍ମିନୀ ସତୀ ସୁନ୍ଦରୀ ।

ଯୋଦ୍ଧାର ବେଶରେ     ଅବରତ ଅଙ୍ଗ
କରି ଅତନ୍ତ୍ର ଭାମିନୀ,
ଅସୁର ଯୁଦ୍ଧରେ     ବଜେହେଲେ ଅବା
ଦୁର୍ଗା ଦୁର୍ଗତିନାଶିନୀ ।

ଦେଖି ସଚକିତେ     ଭାବିଲେ ନୃମଣି
ଏକି ଏକି ମହାରାଣୀ !
ଯୋଦ୍ଧୃସାଜେ କପାଁ ।     ତନୁ ଅବରତ
ଦୈବ ଭେଟାଇଲା ଆଣି"

"ନୁହେ ଏ ପ୍ରଣୟ— ସମ୍ଭାଷଣ ଯୋଗ୍ୟ
ସ୍ଥାନ ହେ ପ୍ରାଣ-ବଲ୍ଲଭ !
ତୁମ୍ଭର ଉଦ୍ଧାର ପାଇଁ ମୋ ଏ ବେଶ
ଆଉ ନ କର ବିଳମ୍ବ ।

ଅଦୂରେ ଘୋଟକ ସ୍ଥିର ଅଛି ଯିବା
ଶୀଘ୍ର କର ଆରୋହଣ !"
ଚଞ୍ଚଳେ ଦମ୍ପତି କାରାଗାର ତ୍ୟଜି
ଘୋଡ଼ାରେ କଲେ ଗମନ ।

ଏଣେ ଦିଲ୍ଲୀଶ୍ୱର ପଦ୍ମିନୀ ପାଇବା
ସୁଖ-କଳ୍ପନାରେ ମଗ୍ନ,
ଏପରି ସମୟେ ପଦ୍ମିନୀ ସୁନ୍ଦରୀ
ରାଜାଙ୍କର ପଳାୟନ,
ଶୁଣି ମହାରୋଷେ କରନ୍ତି ଆଦେଶ
ଦାସୀଙ୍କ ସଭିଙ୍କୁ ନାଶ,
କର ସୈନ୍ୟଗଣ ଆମ୍ଭେ ଦିଲ୍ଲୀରାଜ
କରିବୁଁ ଦୁର୍ଗ ବିନାଶ" ।

ଦାସୀଭ୍ରମେ ସୈନ୍ୟ— ଗଣ ଦୋଳା ପାଶେ
ହରଷେ କରୁ ଗମନ,
ଛଦ୍ମବେଶୀ ବୀର ହସ୍ତେ କ୍ଷଣ ମଧ୍ୟେ
ହରାଇଲେ ସ୍ୱ ଜୀବନ ।

ଦାସୀବେଶୀ ବୀରର                    ଯବନ ସଇନ—
ସଙ୍ଗେ ହେଲା ଘୋର ରଣ
ଶତ୍ରୁ ଅସ୍ତ୍ର ଘାତ                    ବୀରପ୍ରାଣୀଙ୍କ ମୃତ୍ୟୁ—
ଶଯ୍ୟାରେ କଲେ ଶୟନ ।

ଏଣେ ରତ୍ନ ସେନ                    ଚିତୋର ନଗର
ଦେଖୁ ଦେଖୁ ବୀରଶୂନ୍ୟା,
ଆହାର ଅଭାବେ                    ରୋଦନ ଶବଦେ
ସଦା ହେଲା ମହାକ୍ଷୁଣ୍ଣା ।

ଯବନ ସଇନ                    ଦୁର୍ଗର ଅଗ୍ରରେ
କଲେ ତାଙ୍କୁ ଅବରୋଧ,
ନିରୁପାୟେ ଭୀମ—                    ସିଂହ ନରରାଜ
ଠିକ କଲେ ଜନଯୋଦ୍ଧା
କହିଲେ—"ହେ ବୀରେ !                    ଯବନ ଉଚ୍ଛିଷ୍ଟ
ଭୋଗପୁଷ୍ଟ କଳେବର,
ଯବନ ପ୍ରସାଦ                    ଧରିବା ଶିରରେ
ତହୁଁ ମୃତ୍ୟୁ ଶ୍ରେୟସ୍କର ।

ଢାଳିବା ଏ ଦେହ                    ସମର କ୍ଷେତ୍ରରେ
କହ ହୁଏ ସ୍ୱାଧୀନତା
ଚେତଜଣ ବଞ୍ଚିବ                    ଭୁଞ୍ଜ ଦେହ ବହି
ଯବନର ଅଧୀନତା ।

କେ କରେ ସ୍ୱୀକାର ?        ଯେତେଦିନ ଯାଏ
ଖ୍ୟାତ ଥିବ ବୀର ନାମ,
ଯେତେଦିନ ଯାଏ        ଶରୀରେ ଶୋଣିତ
ନ ଛାଡ଼ିବା ଧର୍ମଧାମ,

ତେତେଦିନ ବାଟରେ        ଏହିପରି ସଦା
ଘୋର ରଣ ଲଗିଥାଉ,
ଜନ୍ମଭୂମି ବୈରୀ        ଯବନ ସହିତ
କେବେ ବିଶ୍ରାମ ନ ପାଉ,

ଜନ୍ମଭୂମି ସମା        ନାହିଁରେ ଉପମା
ଏହି ନବ+ପଞ୍ଚ ପୁରେ,
ଛାଡ଼ିବା ଏ ଜୀବ        ରଖିଲେ ତ ନେବ
ମିଶୁ ରକ୍ତ ତା ସଙ୍ଗରେ ।

ଜନମ ଲଭିଲୁ        ସୁଖ ଭୋଗ କଲୁ
ଏ ଦେହ ପୁଷ୍ଟ ହୋଇଲା,
ମାନ ମଦେ ମାତି        ଥାଇ ଦିବାରାତ୍ର
ମାତୃଭୂମିର କି କଲୁ ।

ଆସ ଆଜି ଭାଇ !        ମାତାଗୁଣ ଗାଇ
ଯୁଦ୍ଧକ୍ଷେତ୍ରରେ ପଶିବା,
ଜନ୍ମଭୂମି ପାଇଁ        ଯା ଅଛି ଅମ୍ଭର
ସାନନ୍ଦ ଚିତ୍ତରେ ଦେବା ।

ଏହୁ ତରବାରୀ   ଅଜନ୍ମର ସଖା
ଧର ଯୁବାଙ୍କୁ ନବ ବଳେ,
ପଶ ଯୁଦ୍ଧକ୍ଷେତ୍ରେ   ବୀରର ନାମରେ
କଳଙ୍କ ନ ରଖ ଭଲେ ।
ଯବନ କବଳୁ   ନଗର ରକ୍ଷିବା

ବୋଲି ନ ହୁଏ ପ୍ରତ୍ୟୟ,
ତା ବୋଲି ଶତ୍ରୁଙ୍କୁ   ପୃଷ୍ଠଭଙ୍ଗ ଦେବା
ହୃଦୟେ କି ପୋଷି ଭୟ ?
ଦେଖ ଭ୍ରାତୃଗଣ !   ଯା ପ୍ରିୟ ଦର୍ଶନ
ଥିଲା ଏ ଧରାମଣ୍ଡଳେ,
ଶେଷ ହୋଇଲଣି   ଏ କାଳ ସମରେ
ଯା ଅସ୍ଥି ଚିତା ଅନଳେ
ଶେଷ ହୋଇବାକୁ,   ନାହିଁ ହେ ବିଳମ୍ବ
ଅଛି ଏ ତୁଚ୍ଛ ଜୀବନ,

କି ଲୋଡ଼ା ଏହାକୁ   ଜଳ ଉଠ ଥରେ
ନିର୍ବାଣୋନ୍ମୁଖ (ଦୀପ) ଯେସନ !
ଗାଅ ଗାଅ ସର୍ବେ   ଭାରତର ଜୟ
"ଜୟ ଭାରତର ଜୟ"
ଭାରତ ମାତାକୁ   ପ୍ରଦାନ କରନ୍ତୁ
ଜଗତ ପିତା 'ଅଭୟ' ।

—ପଦ୍ମିନୀ—

ଜୟ ଜୟ ନାଦେ    ପୂରିଲା ଗଗନ
ଭୟଶୂନ୍ୟ ରାଜପୁତ
ବାଳ ବୃଦ୍ଧ ଯୁବା    ଯୁଦ୍ଧେ ସଜ ହେଲେ
ଭାରତର ଯୋଗ୍ୟପୁତ୍ର ।

———

ଷଷ୍ଠ ସର୍ଗ ।



ଅସ୍ତ ଦିନମଣି    ଆଗତ ରଜନୀ
ନବଢ଼ ତମ ବରଣା,
ନାଶୁଛି ଦେଉଛି    ଚିତୋର ଭବିଷ୍ୟ
ସ୍ୱପ୍ନ-ଅନେକ କଳ୍ପନା ।
ମଳିନାଙ୍କ ଦିଶେ    ଦିଗଙ୍ଗନା ମୁଖ
ମ୍ଳାନମୁଖୀ ଦିଶେ ଧରା,
ଶୋକେ ମଳିନତା    ଭଜିଅଛି ନଭେ
ନବଗ୍ରହ, ଚନ୍ଦ୍ର, ତାରା ।
ଚିତୋର ଦୁର୍ଦ୍ଦଶା    ଦେଖି କାନ୍ଦନ୍ତି କି
ସ୍ୱର୍ଗେ ଦେବ-ଦେବୀଗଣ,
ଶିଶିର ଛଳରେ    ଧରଣୀ ଉପରେ
ଲୋତକ କୁଏ ପତନ ।

ତେଜ ସୌମ୍ୟଗଡ଼ 'ହା ହା' 'ହୁ ହୁ' ରବେ
ଏବେ ବହଇ ପବନ,
କାନ୍ଦଇ ଭାରତ ଉପସ୍ଥିତ ଆଜି
ହୋଇଲା କେଡ଼େ ଦୁର୍ଦ୍ଦିନ ।

ରାଜପୁତ ପୁତ୍ର— ରତନେ ଦେଖାଇ
କରୁଥିଲା ଅଭିମାନ,
କୁଟିଳ କରାଳ କାଳ-ଜଠରରେ
ହଜୁଅଛି ସେ ରତନ ।

ଭୂତଳେ ସ୍ୱରୂପ ଅମର ବାଞ୍ଛିତ
ଏ ଯେ ଭାରତ ଧରଣୀ,
କା ଶାପେ ଲାଞ୍ଛିତା ଅପମାନିତା ଗୋ
ହାୟ ବଧାତା କରଣି !

ଫୁଟୁ ନାହିଁ ଫୁଲ ଷଟ୍‌ପଦ ଆଜି
ଫୁଲେ ଫୁଲରେ ଗୁଞ୍ଜନ
ନ କରେ ବିଷାଦେ ଶୋକଗ୍ରସ୍ତା ଆହା
ଢାଙ୍କିଛି ଚନ୍ଦ୍ର-ବଦନ ।

ପଶୁ ପକ୍ଷୀଗଣ କାନ୍ଦି ନୀରବରେ
ଜଣାନ୍ତି ମର୍ମ ବେଦନ,
ଶ୍ରେମନ୍ତ ମନ୍ତନ ନ କରନ୍ତି ଶୋକେ
ଶାବକ ଗାଢ଼ ଲେହନ ।

ସଦନେ ସଦନେ ଏ କରୁଣ ଦୃଶ୍ୟ
ଦେଖେ ମାନସ-ନୟନ,
ଏକକୁ ଅନେକ ଗୃହିଣୀ ବିକଳେ
କରୁ ଅଛନ୍ତି ରୋଦନ,

ସ୍ୱାମୀଙ୍କୁ ଦେଖିଣ କାନ୍ଦୁ ଅଛି ବାମା
ପୁତ୍ରେ ଦେଖିଣ ଜନନୀ,
ସୋଦରେ ସୋଦରେ ଯାଚନ୍ତି ବିଦାୟ
ଭ୍ରାତାକୁ ସ୍ନେହିଁ ଭଗିନୀ

କାନ୍ଦଇ ନିସ୍ୱନେ ଇହଲୋକେ ଅଛି
ହୋଇବ ନାହିଁ ସାକ୍ଷାତ,
ନିର୍ଘୋଷେ କାରୁଣ୍ୟ ବିଗଳିତ ହୃଦ
ବହେ ଶୋକ-ଝଞ୍ଜାବାତ ।

ବୃଦ୍ଧା ନାରୀଗଣ ବଧୂ ଦୁହିତାଙ୍କୁ
ଦେଉଛନ୍ତି ମନବୋଧ,
ବାଳି ଝିଅ କେବେ ଚକ୍ଷୋଚ୍ଛଳା ଗଙ୍ଗ
କରି ପାରଇ କି ରୋଧ ?
କେହିଁ ବୀରବାମା ସଜଳ ନୟନା
ନିଜ ଚିତ୍ତକୁ ଅଶ୍ୱାସି
ସଜାଉଛି କାନ୍ତେ, କବଚ ଅସ୍ତ୍ରରେ
ଏକମନେ ବସି ବସି ।

ଭୀମସିଂହ ରାୟ ସତୀଙ୍କୁ ଉଦ୍ଦେଶି
ଭାଷୁ ଅଛନ୍ତି ବଚନ ।
"ଭାଗ୍ୟେ ଯାହା ବନ୍ଧ ଲିହିଥିଲେ ଏବେ
ହେଲା ଆସି ସଂଘଟନ ।

ଆଗତ ଆହବେ ରାଜପୁତ ଆଜ୍ଞ
ଫେରିବେ ନାହିଁ ସଦନ,
ରକ୍ତପ୍ରିୟ ଶର— ଶଯ୍ୟାରେ ଶୋଇବେ
ଜଙ୍କାସେ ଏକ ବଚନ,

ରାଜପୁତ ନାରୀ— ମାନଙ୍କ ଧରମ
ରକ୍ଷା ହୋଇବ କେମନ ?
ମୃତ୍ୟୁ ପୂର୍ବେ ତାହା ଶୁଣିବାକୁ ଥରେ
ଇଚ୍ଛଇ ଆମ୍ଭର ମନ ।"

ଉତ୍ତରିଲେ ସତୀ ସୀଣାକ୍ଷଣା କଣ୍ଠେ
ଅବା ବହନ୍ତି କୋକିଳା,
ସ୍ୱକାନ୍ତେ ଉଦ୍ଦେଶି ଘନ ଚୂତପତ୍ର
ଡାଳେ ବସି କୁହୁରନ୍ତି ।
"କପାଁ ଅହେ ନାଥ ! ହେଉଛ ଚିନ୍ତିତ
ପାଳିବୁ 'ଜହର ବ୍ରତ' ।
ମର ନ ଜାଣେ କ ରାଜପୁତ-ନାରୀ
ପରାଣେ କ ଏତେ ଭୀତ ?

ଚିତାର ଅନଳ          ସତ୍ତ୍ୱାସ୍ୱ ନାରୀର
ରକ୍ଷା କରିବ ଧରମ,
ସମ୍ମୁଖ ସମରେ          ଯାଅ ପ୍ରାଣନାଥ
ଯଥା ସଦାନନ୍ଦ ଧାମ

ଯେପରି ଏ ଯୁଦ୍ଧ          ଘଟନା ବଇସ୍ତି
ଭୁଲି ନ ପାରିବେ କେବେ,
ବୀର-ଯଶ-ମାଳା          ଶିରେ ଚିହ୍ନ ନାଥ
ନାମ ତବ ରଖି ଭବେ ।
ଦ୍ୱେଷ ହିଂସାମୟ          ଏ ପାପ ଧରଣୀ
ନାହିଁ ଏଥି ପ୍ରୟୋଜନ,
ମିଳନେ ବିଚ୍ଛେଦ          ନାହିଁ ଯେଉଁଠାରେ
ତହିଁ ହୋଇବା ମିଳନ ।"

ଭାଷି ଗଣ୍ଡୟୁଷୀ          ବାମା ଶିରସ୍ତ୍ରାଣ
ଦେଟଲ ପ୍ରାଣପତି ଶିରେ,
ସୁଦୃଢ଼ କବଚେ          ଆବରି ନାଥଙ୍କୁ
ସଜାଇଲେ ଧୀରେ ଧୀରେ ।
ଶାଣିତ କୃପାଣ          ଝଟକଙ୍କ ହସ୍ତେ
କଟିତଟେ ଦୋଳେ ଅସି,
ଧନ୍ୟ ବୀରବାମା          ଧନ୍ୟ ତା ହୃଦୟ
ସଜାଇଲା ମଦାଳସୀ ।

ଧନ୍ୟ ଦେଶ ଭକ୍ତି ସ୍ୱହସ୍ତେ ସଜାଇ
ଯୁଦ୍ଧକୁ ପ୍ରେରଇ ନାଥ,
ଅଛୁ କ ସେଭଳ କନ୍ୟା କେବେ କୋଳେ
ଧରିବୁ ଭାରତ-ମାତ !

—:୦:—

ଯୁଦ୍ଧେ ଗଲେ ରାଜା ରାଜପୁତ୍ରଗଣ
ଅନ୍ଦର ମଧ୍ୟେ ପଦ୍ମିନୀ
ରାଜପୁତନାରୀ— ମାନଙ୍କୁ ସମ୍ବୋଧି
ଭାଷନ୍ତି ଶୁଣ "ସଙ୍ଗିନି !
ନାରୀର ବିଧାତା ସ୍ୱର୍ଗ ମୋକ୍ଷଦାତା
ପରମ ଦେବତା ପତି,
ତାଙ୍କ ଶ୍ରୀଚରଣ ବିନା ରମଣୀର
କେହ ନାହିଁ ଅଛି ଗତି;
ସେ ତ ଗଲେ ରଣେ ଏ ଜୀବନେ
ଜାଳ ଢାଳ ଚିତାନଳ,
ଚାଲ ଚାଲ ସଖି ଯିବା ସ୍ୱର୍ଗପୁରେ
ଜୀବନ ହେଉ ସଫଳ ।
ମାତା, ମାତାମହୀ— ଗଣ ଯେଉଁ ପଥେ
କରି ଅଛନ୍ତି ଗମନ
ଭୟ ନାହିଁ ତହିଁ; ଚାଲ ସଖି ଚାଲ
କରିବା ଅନୁଗମନ ।

—:୦—

ନଗର ରକ୍ଷାର ନାହିଁ ସମ୍ଭାବନା
ନ ହୋଇବା ଅମ୍ଭେ ଭ୍ରଷ୍ଟା,
ଚିତାର ଅନଳେ ପୋଡ଼ିବ ଏ ଦେହ
ଲିହିଛନ୍ତି ବିଶ୍ୱସ୍ରଷ୍ଟା ।

ଜୀବନରେ ଅଉ ନାହିଁ ପ୍ରୟୋଜନ
ଜାଳ ଜାଳ ଚିତାନଳ,
ଏତେବେଳେ ପତି ଶୋଇବେଣି ରଣେ
ସାହସ ଲୋଡ଼ା ଅମ୍ଭର ।
ଯହିଁ ରହୁଥିବେ ସ୍ୱରଗରେ ପତି
ଅମ୍ଭମାନଙ୍କର ରାଜା,
ତାଙ୍କ ନିକଟକୁ ଯିବାକୁ ଗୋ ସଖି !
ଚିତାର ଅନଳ ସାହା ।

ଦେଖ ଦେଖ ସଖି ପୂର୍ବ ଗଗନେ
ଉଷା ହେଲା ସମାଗତ,
ଅମ୍ଭମାନଙ୍କର ଜୀବନରେ ଏହା
ନୁହେ ସାମାନ୍ୟ ପ୍ରଭାତ ।
ଅତି ସୁପ୍ରଭାତ ସଖି ଗୋ ଅମ୍ଭର
ଆଜି ଦୁଃଖ ଅବସାନ,
ଜାଳ ଏ ସମୟେ ଜଗତ-ନାଥଙ୍କୁ
ତାଙ୍କ ଶ୍ରୀଚରଣେ ସ୍ଥାନ ।

ଦଅନ୍ତୁ ନାଥଙ୍କୁ ଅଭାଗୀମାନଙ୍କୁ
କରନ୍ତୁ ତାଙ୍କ ସଙ୍ଗିନୀ,
ବୀର-ବାମାଙ୍କର ସ୍ତବ ଗୀତ ଛନ୍ଦେ
ଭରିଲା ସଘନେ ମେଦିନୀ ।

ଶୁଦ୍ଧ ଜଳେ ସ୍ନାତା ହୋଇଣ ସାଧ୍ୱୀଏ
ପିନ୍ଧି ବସ୍ତ୍ର ଆଭରଣ,
ନାଥ ପଦ ଧ୍ୟାୟି ଦେଉଛନ୍ତି ଶରୀର
କରି ଚିତା ଅରୋହଣ ।

ଦେଖ ହେ ଭାବୁକ ! ମାନସ ନୟନେ
ଜଳୁଅଛୁ ଚିତାବହ୍ନି,
ଗୋଟି ଗୋଟି ହୋଇ ପ୍ରବେଶିଲେ ତହିଁ
ଦଶ ସହସ୍ର ରମଣୀ ।

ଲହଲହ ଜିହ୍ୱା କରି ହୁତାଶନ
ଲେହି ଦିଏ ଅଳ୍ପକ୍ଷଣେ,
ଦେଖେ ଅନ୍ତରୀକ୍ଷେ ପୁଷ୍ପରଥମାନେ
ବହନ୍ତି ଦେବକନ୍ୟାଗଣେ ।

ଅସୀମ ଆଦରେ ଲମ୍ବାଉ ଅଛନ୍ତି
ସତୀ କଣ୍ଠେ ପୁଷ୍ପମାଳା,
ହୁଳହୁଳି ନାଦ କରନ୍ତି ବଦନେ
ତ୍ରିଦଶ ଅପ୍ସରୀ ବାଳା ।

ସାଦରେ ପୁଷ୍ପକ— ବିମାନେ ବସାଇ
ସତୀ ସଙ୍ଗେ ସହଚରୀ—
ମାନଙ୍କୁ ପ୍ରମୋଦେ ଜୟ ଜୟ ନାଦେ
ନେଲେ ସତୀ ସ୍ୱର୍ଗପୁରୀ ।

---

ରଣେ ଜୟ ଲଭି ଦିଲ୍ଲୀର ଈଶ୍ୱର
ପୋଷି ପଦ୍ମିନୀର ଆଶ,
ଚିତୋରେ ପ୍ରବେଶି ପ୍ରତ୍ୟେକ ସଦନେ
କଲେ ତାହାଙ୍କୁ ତଲାସ ।
ପରେ ବନ୍ଧୁଗଣେ ଶୁଣିଲେ ଶ୍ରବଣେ
ଧରାଧାମେ ନାହିଁ ସତୀ,
କି କରିବ ଆଉ ଭାଷିଲେ ସଦୁଃଖେ
କରି ବହୁତ ଖେଦୋକ୍ତି ।
"ଏହି ନିମନ୍ତରେ ଜଗତ ମଧ୍ୟରେ
ହିନ୍ଦୁନାରୀ ବରଣୀୟା,
ଧନ୍ୟ ସେ ସାଧନା ତାଙ୍କର ନିମନ୍ତେ
ମହୀ ହେଲା ମହନୀୟା ।
ହିନ୍ଦୁମାନେ ବେଶୀ କିଛି ନ କଲେହେଁ
ବୁଝନ୍ତି ସତୀର ମାନ,
ସତୀର ସତୀତ୍ୱ ରକ୍ଷା ନିମନ୍ତରେ
ସାନନ୍ଦେ ଦିଅନ୍ତି ପ୍ରାଣ ।

ବୃଥା ଏତେ ଧନ    ସୈନ୍ୟ ବ୍ୟୟ ହେଲା
ବୃଥା ହେଲା ପରିଶ୍ରମ,
ହସ୍ତେ ନ ପାଇଲି    ପଦ୍ମିନୀ ସୁନ୍ଦରୀ
ସାର ହୋଇଲା କୁନାମ ।
ପଦ୍ମିନୀ ଅଯୋଗ୍ୟ    ଅଟଇ ତ ମୁହିଁ
ମୁହିଁ ସିନା ଦନ୍ତାବଳ ।
ମୋର ଯୋଗୁଁ ନଷ୍ଟ    ଚିତୋର-ନଗରୀ
ସର-ପଦ୍ମିନୀ-କମଳ !
ପଦ୍ମିନୀ ଶଯ୍ୟକ    ଶୁଦ୍ଧ ଛଡ଼ା ଭସ୍ମ
କର ଚିତୋର ନଗର ।"
ନବାବ ଆଦେଶ    ଅନୁରୂପ କାର୍ଯ୍ୟେ
ସୈନ୍ୟେ ହେଲେ ତତ୍ପର ।



## ସପ୍ତମ ସର୍ଗ ।

ଦେଖ ହେ ଭାବୁକ !    ରଣକ୍ଷେତ୍ର ଦୃଶ୍ୟ
ବୀରର ପ୍ରିୟ ମରଣ,
ଶୋଇଛନ୍ତି ବୀରେ    ଶର-ଶଯ୍ୟାପର
ମୃତ୍ୟୁ କରି ଆଲିଙ୍ଗନ ।

କେତେ ଟେକ କର ଅସିଥିଲେ ରଣେ
ଦେଖାଇବା ପାଇଁ ପଣ,
ଏବେ ସର୍ବ ଗର୍ବ ଯାଇଅଛି ଭାଙ୍ଗି
ହରାଇଛନ୍ତି ଜୀବନ ।

ଶୃଗାଳ ଶ୍ୱାନର ଭୋଜ୍ୟ ହୋଇଅଛି
ଅଙ୍ଗ ସୁନ୍ଦର ଶରୀର,
ହନ୍ତୁ ଶେଷକାଳେ ଦୁଃଖିତ କୋହୁଣ
ଗଲା ଜୀବନ ତାଙ୍କର ।

କାହା ହାତ ଗୋଡ଼ କଟା ହୋଇଅଛି
କାର ବା ଗଡ଼ୁଛି ମୁଣ୍ଡ,
ଶୋଣିତ-ତଟିନୀ ବହୁଅଛି ଅବା
ଖାଉଛି ହଗଇ ପିଣ୍ଡ ।

କେତେ ଦରମସ୍ତ— ଜଳ 'ଜଳ' 'ଜଳ'
ବୋଲି ଡାକନ୍ତି ବଦନେ,
ଅନ୍ତିମ ଶଯ୍ୟାରେ ଶୋଇ ପ୍ରିୟମୁଖ
ଦେଖନ୍ତି ମାନସ ଡୋଳେ ।

କେତେ ହାତୀ ଘୋଡା ପିଣ୍ଡ ଗଡ଼ୁଅଛି
ପଡ଼ିଅଛି ଭଙ୍ଗା ଯାନ,
ତାଙ୍କୁ ନାହିଁ ଅଛୁ ଶବବାଦ୍ୟ ଅଛି
ବନ୍ଧୁ ଗୃଧ ଶିବା ଶ୍ୱାନ ।

—⁂—

ଝଙ୍କଟ ନାଦରେ          ରଣକ୍ଷେତ୍ର ପୂର୍ଣ୍ଣ
ଢଣଇ ଢେଡ଼େ ଝଉସ,
ଏ ସମୟେ ତହିଁ          ଅନୁଚର ସଙ୍ଗ
ପ୍ରବେଶିଲେ ରାଜବସ୍ତ୍ର ।

ଏହି ଜଣେ ମାତ୍ର          ଅଛନ୍ତି ଧରାରେ
ଶ୍ରୀମଙ୍କିହଙ୍କର ପୁତ୍ର,
ରୂପ ଗୁଣ ଧାମ          ଦଶଷ୍ଟ କୁମାର
ଅଣ୍ଟାକଲେ ଯୁବସେନ ।
ସଜଳ ନୟନେ          ଅନୁଚର ସଙ୍ଗ
ଭ୍ରମନ୍ତି ରଣ-ଭୂମିରେ,
ତାଙ୍କର ଶବ          ଦର୍ଶନ ମାନସେ
ଭେଟିଲେ ଥିଲା ଅଦୂରେ ।

ଶୋକ ଅସମ୍ଭାଳେ          ମୋହ ପ୍ରାପ୍ତ ହେଲେ
ବଳିଷ୍ଠ ରାଜ-ନନ୍ଦନ,
ସଖାରୂପେ ମୂର୍ଚ୍ଛା          ଭୁଲାଇଲା କ୍ଷଣେ
ଚିତ୍ତ ଦାରୁଣ ବେଦନ ।
ପୁଣି ସଞ୍ଜ୍ଞା ଲଭି          ଦେଖିଲେ ଜନକ
ଛନ୍ତି ଅନ୍ତିମ-ଶୟନେ,
କର ଯୋଡ଼ି ଦୁଃଖେ          ଭାଷନ୍ତି ହେ ତାତ !
ଦେଖ ତୁମ୍ଭର ନନ୍ଦନେ ।

ଉଠ ଉଠ ପିତଃ ! ବିଳମ୍ବ ନ କର
ମାଡ଼ି ଆସୁଛି ଯବନ,
ବୀର ସୈନ୍ୟ ନେଇ ବାରେ ଯୁଦ୍ଧ କର
ରକ୍ଷ ଜନ୍ମଭୂମି ମାନ ।

କି କରିବ ଦାସ ଅଟେ ବଳହୀନ
ନାହିଁ ସୈନ୍ୟ ନାହିଁ ଧନ,
ଗଲା ରାଜ୍ୟ, ଧନ ଗଲା ତ ଆପଣ
ବୃଦ୍ଧଙ୍କ ଭାଗ୍ୟ-ତପନ ।
ଜାଗ ମା ଭାରତ ! ଜନମଭୂମି ଗୋ !
ଆଉ କର ନା ଶୟନ,
ତୋର ପୁତ୍ରଗଣ କି ଦଶା ଭୋଗନ୍ତି
ଫେଡ଼ି ଦେଖ ତୁ ନୟନ ।

ଜନ୍ମଭୂମି ! ତୁହି କାର ମାତା ହୋଇ
କାହାକୁ ଧରୁଛୁ କୋଳେ,
ସେ ତ ନୁହେ ପୁତ୍ର, ପୁତ୍ରରୂପୀ ସର୍ପ
ଜାଗ ହେଲେ ଏତେବେଳେ !
ଅଛୁ କେତେ ଦିନ ଏ ଯବନଦଳ
ତୋତେ ଦେବେ ଗୋ କଷଣ,
ଜାଗ ଜାଗ ମାତଃ ଭାରତ ଜନନ !
ଡାକେ ଅଯୋଗ୍ୟ ନନ୍ଦନ ।

କେଉଁ ଅପରାଧ କଲେ ତୋ ସନ୍ତାନେ
କପାଇଁ ହେଲୁ ନିର୍ଦ୍ଦୟା,
ଛୁଠ ନବକଲେ ପୁତ୍ରେ କୋଳ କର
ହେନେ ମହାମହିମାମୟୀ,

ଥିଲୁ ଗୋ ଭାରତ ! କାହିଁ ସେହି ଦନ
ଅଛି ଲେଉଟି ନ ଅସେ,
ନ ପାଇବୁ ସେହି ପୁତ୍ର କନ୍ୟା ବୋଲି
କାନ୍ଦି ଶୋଇଲୁ ନିରାଶେ ।

ଅସ ଅସ ଅସ ମହାରଥୀଗଣ
ପାଷଣ୍ଡ କର ଦଳନ,
ଭାରତ ଜନନୀ ଅଶ୍ରୁ ପୋଛି ଦିଅ
ରକ୍ଷ ହେ ତାହାର ମାନ ।

ଅହେ ଧର୍ମରାଜ ! ଭୀମଙ୍କୁ ଉପଦେଶି
ଅଦେଷିଣ ଥିଲ ଯାହା,
ଭାରତ ସନ୍ତାନ ସ୍ୱ ସ୍ୱାର୍ଥେ ମଗନ
ଭୁଲି ଯାଇଛନ୍ତି ତାହା ।
"କୁରୁ ପାଣ୍ଡବରେ ଯଦି ଯୁଦ୍ଧ ହୁଏ
ସେମାନେ ଶତ ସୋଦର,
ଅମ୍ଭେମାନେ ପଞ୍ଚ— ଭ୍ରାତା କିନ୍ତୁ ଯଦି
ଅନ୍ୟ ଲୋକ ସଙ୍ଗତର ।

ଯୁବ 'ହୁଏ ଏକ— ଶତ ପଞ୍ଚଭାଇ''
ସେହି ଅମୂଲ୍ୟ ବଚନ,
ସେହି ଭ୍ରାତୃ ପ୍ରୀତି ଭୁଲି ଯାଇଛନ୍ତି
ଏବେ ଭାରତ ନନ୍ଦନ ।
ତୁମ୍ଭ ଲୀଳା ଷେତ୍ର ତ ଦଶା ଭୋଗୁଛି
ଦେଖ ବାରେ ଜଗନ୍ନାଥ !
ଶାନ୍ତି ବରଷଣ କର ତା ଜୀବନେ
ସୁଖୀ ହେଉ ଏ ଭାରତ ।
ନ୍ୟାୟ, ଦୟା, କ୍ଷମା ପରିପୂର୍ଣ ରାଜା
ହୁଅ ଭାରତ ମଣ୍ଡଳେ,
ଅଉ କେତେ ଦିନ ଭାରତ ଜନନୀ
ଥିବ ଅଜ୍ଞାନ କବଳେ ।
ପାଷଣ୍ଡ ଦଳନେ ଶିଷ୍ଟର ପାଳନେ
ହୁଅ ପରି ଅବତାର,
ଅଉ କେତେ ଦିନେ ଶୂନ୍ୟ ହେବ ପ୍ରଭୋ !
ପୃଥ୍ୱୀର ପାପଭାର ।''





